ଶ୍ରୀ ଶ୍ରୀ ଠାକୁର ଅନୁକୂଳଚନ୍ଦ୍ରଙ୍କ

# ଭଜନ ସମ୍ଭାର



ସଂଗ୍ରାହକ :

## ମାଉସୀମା' ସତ୍‌ସଙ୍ଗ


## ମାଉସୀମା' ସତ୍‌ସଙ୍ଗ

ଗୋସାଗରେଶ୍ୱର ଛକ, ପୁରୁଣା ଭୁବନେଶ୍ୱର

ଭୁବନେଶ୍ୱର-୭୫୧୦୦୨

ମୋ-୯୩୩୭୫୨୨୩୩୨

ଶ୍ରୀ ଶ୍ରୀ ଠାକୁର ଅନୁକୂଳଚନ୍ଦ୍ରଙ୍କ

# ଭଜନ ସମ୍ଭାର

ପ୍ରକାଶକ: ମାଉସୀମା' ସତ୍‌ସଙ୍ଗ
ଗୋସାଗରେଶ୍ୱର ଛକ,
ପୁରୁଣା ଭୁବନେଶ୍ୱର

ମୁଦ୍ରକ: ଶ୍ରୀମନ୍ଦିର ପବ୍ଲିକେଶନ୍ସ
ଶହୀଦ ନଗର, ଭୁବନେଶ୍ୱର-୦୭

ପ୍ରଥମ ସଂସ୍କରଣ : ୨୦୧୯ ମସିହା

ମୂଲ୍ୟ ୭୦ ଟଙ୍କା ମାତ୍ର

## ସୂଚୀପତ୍ର

### ଓଡ଼ିଆ





## ବଙ୍ଗଳା





















## হিন্দী















## କିର୍ତ୍ତନ





# ଅନାଦି ଅନନ୍ତ ତୁମେ ଅଭିରାମ

ଅନାଦି ଅନନ୍ତ ତୁମେ ଅଭିରାମ (୨ ଥର)
ବନ୍ଦେପୁରୁଷୋତ୍ତମମ୍... (୬ ଥର)
ଅନାଦି......... ॥୦॥

କେତେ ଅବତାରେ ଅଇଲ ଏ ଭବେ
ବୁଦ୍ଧ ଚଇତନ୍ୟ ରାମକୃଷ୍ଣ ଭାବେ (॥)
ମହମ୍ମଦ ଯୀଶୁ ରାମ ପର୍ଶୁରାମ ... (୨ଥର)
ରହିଲ ସବୁରି ଧାମେ...
ବନ୍ଦେ ପୁରୁଷୋତ୍ତମମ୍...(୬ ଥର)
ଅନାଦି......... ॥୧॥

ଆଜି ଆସିଅଛ ଅନୁକୂଳ ଭାବେ
କୂଳେ ଲଗାଇବ ଏହାମୁହିଁ ଭାବେ (॥)
କଳ୍କି ଅବତାରେ ପାପୀ ତାରୁଅଛ ... (୨ଥର)
ଜୀବ ଜଗତଧାମେ...
ବନ୍ଦେ ପୁରୁଷୋତ୍ତମମ୍... (୬ଥର)
ଅନାଦି......... ॥୨॥

# ଆହେ ପ୍ରେମମୟ ଦରଦୀ ଦୟାଲ

ଆହେ ପ୍ରେମମୟ ଦରଦୀ ଦୟାଲ
କେତେ ମତେ ପାଅ ଭଲ (।।)
ନିଜର କରି ମୋ ଚୁନା ସଂସାରକୁ ( ୨ଥର)
ସୁନା କରି ଗଢିଦେଲ ।
ଆହେ.......................... ।।୦।।

ମୁଁ ମଜ୍ଜିଥିଲି ଆତ୍ମ ପ୍ରୀତି କର୍ମେ
ବୁଝି ନ ପାରିଲି ମୋର ଏ ମରମେ (।।)
ନିନ୍ଦା, ଘୃଣା, ଅପମାନ ହସି ସହିଛ କଷଣ ( ୨ଥର)
ଜୀବନ ମୋହର ପ୍ରେମେ ଭରିଲ
ଆହେ.......................... ।।୧।।

ମୁଁ ମାଗୁଥିଲି ଧନ, ଜନ, ମାନ
ବୁଝି ନପାରିଲି ତବ ପ୍ରୟୋଜନ (।।)
ରସଭରା ଭବସିନ୍ଧୁ, ମୁଁ ଏକ କ୍ଷୁଦ୍ର ବିନ୍ଦୁ ( ୨ଥର)
ଅକାତରେ ପ୍ରଭୁ ଅଜାଡି ଦେଲ
ଆହେ.......................... ।।୨।।

ମାଗୁଣି ମୋହର ତବ ଶ୍ରୀପୟରେ
ମଧୁ ରାଧାନାମ ବାଜୁ ମୋ ଅନ୍ତରେ (।।)
ମୋ ନୟନେ ନାଚୁଥାଅ (ପ୍ରଭୁ ହେ)
ସଦା ତୁମେ ଦୟାମୟ (।।)
ନିତ ସେବିବି ତବ ପଦଯୁଗଳ
ଆହେ.......................... ।।୩।।



# ଆରତୀ ସଜେଇ ଦେବି

ଆରତୀ ସଜେଇ ଦେବି
ପ୍ରଣତି ଜଣାଉଥିବି (।।)
ଶ୍ରୀଚରଣ ଧୂଳି ସାରା ଅଙ୍ଗେ ବୋଳି
ଜୟରାଧା (ଗାଉଥିବି...) (୪ଥର)
ଆରତୀ ସଜେଇ ଦେବି........... ।।୦।।

ଚରଣ କମଳେ ପଶିଛି ଶରଣ
ତୁମ ହାତଖେଳ ଜନମ ମରଣ ( ୨ଥର)
ଭାବକୁ ନିକଟ ତୁମେ, ଅଭାବକୁ ଦୂର ( ୨ଥର)
ଭାବରେ ବନ୍ଧା ହେ ଦୟାଲ ଠାକୁର
ଦରଶନେ (ଧାଉଁଥିବି...)(୪ଥର)
ଆରତୀ ସଜେଇ ଦେବି........... ।।୧।।

ଜୀବନର ପଥ ଅନ୍ଧାର କେତେ
ତୁମେ ହିଁ ଆଲୋକ ମୋର ଚଲାପଥେ ( ୨ଥର)
ମୋହରି ନାଆରେ ତୁମେ ଯେ ନାଉରି ( ୨ଥର)
ଭବ ପାରାବାରୁ କରିଦିଅ ପାରି
ତୁମ ପଦ (ଧାଉଥିବି...)(୪ଥର
ଆରତୀ ସଜେଇ ଦେବି........... ।।୨।।

# ଆଜି କି ଆନନ୍ଦ ଦିନରେ

ଆଜି କି ଆନନ୍ଦ ଦିନରେ, ଆଜି କି ମଧୁର ଦିନ ( ୨ଥର)
ଜଗତ ଜନନୀ ଲକ୍ଷ୍ମୀ ଠାକୁରାଣୀ ( ୨ଥର)
ଧରାରେ ହେଲେ ଜନମରେ
ଦୟାମୟୀ କରୁଣାମୟୀ ସେ ଭକତ ଜୀବନ
ଆଜି କି ................ ॥୦॥

ପ୍ରେମମୟଙ୍କର ପ୍ରେମମୟୀ ସିଏ
ଦୁଃଖୀଙ୍କ ଦୁଃଖ ହାରିଣୀ
ମଙ୍ଗଳମୟୀ ସେ ଜଗତର ମାତା
ଦାରିଦ୍ର୍ୟ ଦୁଃଖ ଭଞ୍ଜନୀ
ଧରା ହେଲା ଧନ୍ୟ ( ୨ଥର) ମାତାଙ୍କ ଜନମେ ( ୨ଥର)
ପୁରୁଷୋତ୍ତମ ସଙ୍ଗିନୀ ସେ
ଅନ୍ନପୂର୍ଣ୍ଣା ସୁଖ ଦାୟିନୀ ମା ଜଗତଜନନୀ
ଆଜି କି ................ ॥୧॥

ହୁଳହୁଳି ଶଙ୍ଖନାଦ ଶବଦରେ
ପୁରି ଉଠୁଛି ଧରଣୀ
ସର୍ବମୟୀ ଲକ୍ଷ୍ମୀ କମଳିନୀ ସିଏ
ଦୁଃଖ ବିପତ୍ତି ହାରିଣୀ
କୋଟି କୋଟି ଭକ୍ତ ( ୨ଥର) ସେ ପାଦ କମଳେ
ଲୋଟି ଯାଆନ୍ତି ଶରଣ ଯେ
ଜଗତ କଲ୍ୟାଣୀ ଲକ୍ଷ୍ମୀ ମା ଚରଣେ ପ୍ରଣାମ
ଆଜି କି ................ ॥୨॥



# ଆକାଶରେ ବତାସରେ

ଆକାଶରେ ବତାସରେ ସୁମନର ସୁବାସରେ
ଖୋଜେ ମୁଁ ପ୍ରଭୁ ତୁମକୁ (॥)
ଆକାଶରେ............ ॥୦॥

ତଟିନୀ ଆବର୍ତ୍ତନିରେ ସାଗରର ଲହରୀରେ ( ୨ଥର)
ମଧୁବନ ଗୁଞ୍ଜନରେ ବିହଗ କାକଳୀ ସ୍ୱନେ ( ୨ଥର)
ଶୁଣେ ମୁଁ ତୁମ ନାମକୁ
ଆକାଶରେ............ ॥୧॥

ଅରୁଣର ରଙ୍ଗୀମାରେ ବନାନୀ ସୁବଙ୍କିମାରେ ( ୨ଥର)
ଚନ୍ଦ୍ରିକାଚାରୁ କିରଣେ ସ୍ୱପ୍ନ ବିଭୋର ନୟନେ ( ୨ଥର)
ଦେଖେ ମୁଁ ତୁମ ରୂପକୁ
ଆକାଶରେ............ ॥୨॥

କେତେରୂପ ଉଙ୍କିମାରେ ବିଲୀନ ସେ ଅରୂପରେ ( ୨ଥର)
ମଧୁ ମଧୁ ବଂଶୀସ୍ୱନେ ସ୍ପନ୍ଦନ ଜଗାଇ ପ୍ରାଣେ ( ୨ଥର)
ଝୁରେ ମୁଁ ସେଇ ଗୀତକୁ
ଆକାଶରେ............ ॥୩॥

# କରୁଣାମୟ ହେ ତୁମେ

କରୁଣାମୟ ହେ ତୁମେ ପୁରୁଷୋତ୍ତମ ( ୨ଥର)
ତୁମ ପ୍ରେମ ତୁମ ଦୟା ଅନନ୍ତ ଅସୀମ ( ୨ଥର)
କରୁଣାମୟ................||୦||

ଯେ ଜୀବନ ହାହାକାରେ ଝଡିପଡୁଥିଲା
ତୁମରି ପରଶ ଲଭି ପଲ୍ଲବି ଉଠିଲା (||)
ପରଶମଣି ହେ ତୁମେ ଅନ୍ତରତମ
ତୁମ ପ୍ରେମ...
କରୁଣାମୟ................||୧||

ଶତ ସାଧନାର ଫଳେ ଯାହା ନ ମିଳଇ
ତୁମରି ଦର୍ଶନ କ୍ଷଣେ ସକଳ ଭରଇ (||)
ଚିର ପ୍ରେମମୟ ତୁମେ ହେ ପ୍ରିୟପରମ
ତୁମ ପ୍ରେମ...
କରୁଣାମୟ................||୨||

ମାନବ ଉଦ୍ଧାର ଲାଗି ତବ ଆଗମନ
ବୁଝି ବି ଅବୁଝା ହୁଏ ଏ ଅବୋଧ ମନ (||)
ତଥାପି ଆଶୀଷ ଝରେ ଦରଦୀ ପରମ
ତୁମ ପ୍ରେମ...
କରୁଣାମୟ................||୩||



# କି ଦେଇ ପୂଜିବି ଚରଣେ ତୁମର

କି ଦେଇ ପୂଜିବି ଚରଣ ତୁମର
(ପ୍ରଭୂ ହେ) ମୋର ବୋଲି କିଛି ନାହିଁ (||)
ଅନ୍ତରେ ଭକତି ରଖିଛି ସାଇତି ( ୨ଥର)
ପୂଜା ନିବେଦନ ପାଇଁ...
କି ଦେଇ.......... ||୦||

ମାଗିଲେ ମାଗିବି ତୁମ ଦୟା ସ୍ନେହ
କରିବି ଦଇନି ପ୍ରଭୂ ପଦେ ଲୟ (||)
ଆରତୀ ବେଳାର ସଳିତା ହୋଇ ମୁଁ ( ୨ଥର)
ଆଲୋକ ବିଛାଇ ଦେବି...
କି ଦେଇ.......... ||୧||

ଅନ୍ତରରୋ ମୋର ସଞ୍ଚିତ ବେଦନା
କା ଆଗେ କହିବି ପ୍ରଭୁ ତୁମ ବିନା (||)
ପାଦେ ଢାଳିଦେଇ କାମନା ବାସନା ( ୨ଥର)
ନୟନୁ ନୀର ଝରାଇ...
କି ଦେଇ.......... ||୨||

# କି ସୁନ୍ଦର କି ସୁନ୍ଦର

କି ସୁନ୍ଦର କି ସୁନ୍ଦର ଦରଦୀ ଠାକୁର ମୋର (୨ଥର)
ସ୍ନେହପ୍ରୀତି ମମତାର ପ୍ରେମଘନ କଳେବର...
କି ସୁନ୍ଦର........... ॥୦॥

ଆଖିରେ ମିଶିଲେ ଆଖି ପରାଣ ମୋ ଯାଏ ଲାଖି
ନିରେଖି ବାଙ୍କ ଚାହାଣୀ ମୋହନ ତ୍ରିଭଙ୍ଗୀ ଠାଣି (॥)
ମନ ଯମୁନାରେ ମୋର
ଉଠେ ପୀରତି ଜୁଆର
କି ସୁନ୍ଦର........... ॥୧॥

ହସରେ ହସେ ଜଗତ ଶୁଷ୍କତରୁ ପଲ୍ଲବିତ
ଆନନ୍ଦେ ମଗନ ଚିତ୍ତ ତନୁ ମନ ପୁଲକିତ (॥)
ପ୍ରେମାନନ୍ଦେ ବିକଶିତ
ହୃଦୟ କୋମଳ ମୋର
କି ସୁନ୍ଦର........... ॥୨॥
ବଚନ କେଡେ ମଧୁର କିଣେ ମଧୁ କଣ୍ଠସ୍ୱର
ଜୀବନ ବୀଣାରେ ମୋର ତୋଳଇ ମଧୁ ଝଙ୍କାର (॥)
ପରାଣ ଚକୋରୀ ମୋର
ଝୁରେ ଝୁରି ବାରମ୍ବାର
କି ସୁନ୍ଦର........... ॥୩॥



# କାମ ନ ଛାଡିଲୁ, କ୍ରୋଧ ନ ଛାଡିଲୁ

କାମ ନ ଛାଡିଲୁ, କ୍ରୋଧ ନ ଛାଡିଲୁ
ନ ଛାଡିଲୁ ଲୋଭ ମୋହ (॥)
ମଦ ନ ଛାଡିଲୁ ମାତ୍ସାର୍ଯ୍ୟେ ବୁଡିଲୁ (୨ଥର)
କେମୁତି ବଞ୍ଚିବୁ କହ... ତୁ, କେମିତି ବଢ଼ିବୁ କହ
କାମ ନ................. ॥୦॥

ଅହଂକାର କଲୁ ଜୀବନରେ ତୋର, ସହଚର ଚିରଦିନ
ଆଣିଲୁ ଅଶାନ୍ତି ତହୁଁ ସ୍ୱାର୍ଥବୁଦ୍ଧି (୨ଥର)
କାମ, କ୍ରୋଧ, ହିଂସା, ମାନ
ଶ୍ରଦ୍ଧା ନକରିଲୁ ଗୁରୁ ଗୁରୁଜନେ, ଲଘୁଜନେ ନାହିଁ ସ୍ନେହ (୨ଥର)
ଏକୂଳ ଛାଡିଲୁ ସେକୂଳ ଛାଡିଲୁ (୨ଥର)
କେମିତି ବଞ୍ଚିବୁ କହ ତୁ, କେମିତି ବଢ଼ିବୁ କହ
କାମ ନ....................... ॥୧॥

ଗୃହ କନ୍ଦଳର ମଦିରା ପାନରେ, ବିତିଗଲା ଦିନରାତି
ସରବନାଶର ସଦର ଦୁଆରେ, ରଖୁ ସନ୍ତାନ ସନ୍ତତି (୨ଥର)
ଅର୍ଥକୁ କରିଲୁ ଜୀବନ ସର୍ବସ୍ୱ, ମଣିଷେ ମୋଡିଲୁ ମୁହଁ (୨ଥର)
ଆପଦେ ବିପଦେ କେ ହେବ ଭରସା (୨ଥର)
କେମିତି ବଞ୍ଚିବୁ କହ ତୁ, କେମିତି ବଢ଼ିବୁ କହ
କାମ ନ........................ ॥୨॥

ଅଭାବରେ ଯେବେ ପରିଶ୍ରାନ୍ତ ହେଲୁ, କଲୁରେ ବ୍ରହ୍ମ ଜିଜ୍ଞାସା
ଗୁରୁପଦ ସିନା ମୁକତି ଦୁଆର, ମାନବ ଆଶା ଭରସା (୨ଥର)
ହୁଅ ତଦଗତ ପରମ ଆଶ୍ରିତ, ରଖି ପ୍ରଭୁପଦେ ଲୟ (୨ଥର)
ସରବ ଦୁରିତ ହେବ ବିଖଣ୍ଡିତ (୨ଥର)
ନାହିଁ ଭୟ ନାହିଁ ଭୟ, ରେ (୨ଥର)
କାମ ନ........................ ॥୩॥

# କୁଳୁକୁଳୁ ପଦ୍ମା ନଈ ଲୋ ସଜନୀ

କୁଳୁକୁଳୁ ପଦ୍ମା ନଈଲୋ ସଜନୀ
କୁଳୁକୁଳୁ ପଦ୍ମା ନଈ (।।)
ପୁରୁଷୋତ୍ତମଙ୍କ ଚରନ ଛୁଇଁ (୨ଥର)
ନିରତେ ଯାଉଛେ ବହି (୪ଥର)
କୁଳୁକୁଳୁ................ ।।୦।।

ମନ୍‌ମୋହିନୀ ମାତା ଜଗତ ପିତା
ଦିବା ଚାରି ଦଣ୍ଡ କୋଡିଏ ଲିତା (।।)
ଆଦ୍ୟ ଶୁକ୍ରବାର ନବମୀ ତିଥି
ବିହଙ୍ଗ ଗାଆନ୍ତି (ମଙ୍ଗଲ ଗୀତି ଲୋ) (୨ଥର)
ଏକାଲେ ଜନ୍ମ ହେଲେ ଅନୁକୂଲ (୨ଥର)
ଜଗତ ଉଦ୍ଧାର ପାଇଁ (୪ଥର)
କୁଳୁକୁଳୁ................ ।।୧।।

ମୁଣ୍ଡେ ନାହିଁ କେଶ ତୁଣ୍ଡରେ ହସ
ମନଛୁଆଁ ରୂପ କିବା ରହସ୍ୟ (।।)
ଆଲୋକିତ ହେଲା ସୁତିକା ଘର
ଜନମିଲେ ପ୍ରଭୁ (ପଦ୍ମ ପୟର ଲୋ) (୨ଥର)
ଏ ସୁନ୍ଦର ବେଶ ଦରଶନେ ଆସେ (୨ଥର)
ଭକତ ଆସିଲେ ଧାଇଁ (୪ଥର)
କୁଳୁକୁଳୁ................ ।।୨।।

ମାତା ଦେଲେ ନାମ ଶ୍ରୀ ଅନୁକୂଳ
ଆକୂଲେ ପଡିଲେ ଦେବୁଟି କୁଳ (।।)
ଦୀନହୀନ ଜନ ଶୋକ କଷନ
କୋଟି ମାନବର (ମନ ଗହନ ଲୋ) (୨ଥର)
ମାତାଙ୍କ ଆଦେଶେ ନେଲେ ପରଶ (୨ଥର)
ପ୍ରେମର ପରଶ ଦେଇ (୪ଥର)
କୁଳୁକୁଳୁ................ ।।୩।।



# କା ଆଗେ ଗାଇବି ଗୀତ

କା ଆଗେ ଗାଇବି ଗୀତ, ଏକ୍‌ତାରା ମୋ ହାତେ ଧରି
ମିଳନ ମଧୁରସ୍ମୃତି (୨ଥର) ବିରହର ତାନ ତୋଳି
କା ଆଗେ ଗାଇବି.................. ।।୦।।

ଅୟୁତ ଜୀବନ ଗାଥା, ବ୍ୟଥା ବେଦନାରେ ଭରା
ଆନନ୍ଦର ଶିହରଣ, ସପନର ସୁଧା ଧାରା
ତୁମେ ଯେ ନିଖିଳ କଣ୍ଠେ, ପ୍ରଣୟର ମିଠା ସୁରେ
ସେ ନିଖିଳ ଅନୁଭବ ବିତରିବି ଚରାଚରେ (୨ଥର)
ଜୀବନ ବୀଣାର ତାରେ (୨ଥର) ନବରାଗ ଛନ୍ଦ ତୋଳି
ଏକ୍‌ତାରା ମୋ ହାତେ ଧରି (୨ଥର)
କା ଆଗେ ଗାଇବି.................. ।।୧।।

ବିଜନ ତଟିନୀ ତୀରେ, ସଞ୍ଜ ଆକାଶେ ଚାହିଁ
ପ୍ରାଣର ଉତ୍ତଳ ସୁରେ, ପ୍ରୀତିର ମହ୍ଲାର ଗାଇ
ତୁମରି ବିରହ ଜ୍ୱାଳା, ମିଳନ ଆକୁଳ ଗୀତି
କାହାକୁ ଛୁଇଁଲା ନାହିଁ ଜାମିନୀତ ଗଲା ବିତି (୨ଥର)
କେତେ ଯାତ୍ରୀ ଗଲେ କେହି (୨ଥର) ଚାହିଁଲେନି କର୍ଣ୍ଣ ଡେରି
ଏକ୍‌ତାରା ମୋ ହେତେ ଧରି (୨ଥର)
କା ଆଗେ ଗାଇବି.................. ।।୨।।

ତୁମେତ କରିଛ ପୂର୍ଣ୍ଣ, ଶୂନ୍ୟ ହୃଦୟ ମୋର
ସବୁରି ଅନ୍ତର ବୁକୁ, ହଜିଛି ଜୀବନ ସୁର
ତୁମ ଦେବଗାନ ଆଜି, ତୁମକୁ ମୁଁ ଶୁଣାଇବି
ଉଲ୍ଲାସ ବିଭୋର ତାନେ, କଣ୍ଠ ଭରି ଗାଇଯିବି (୨ଥର)
ତୁମ ଲାଗି ପ୍ରିୟତମ (୨ଥର) ଅଶ୍ରୁର ପ୍ରଦୀପ ଜାଳି
ଏକ୍‌ତାରା ମୋ ହାତେ ଧରି (୨ଥର)
କା ଆଗେ ଗାଇବି.................. ।।୩।।

# ଗାଅ ରାଧେ ରାଧେ ରାଧେ

ପାଇଛି ଜୀବନ ବ୍ୟଥିତ ପରାଣ, ତୁମରି ନାମକୁ ସ୍ମରି
ଦୁଃଖ ଶୋକ ସବୁ ମନରୁ ପାଶୋରି ଗାଏ ରାଧା ରାଧା ବୋଲି ॥

ଗାଅ ରାଧେ ରାଧେ ରାଧେ, ନାଚ ଆନନ୍ଦେ ଦିବାହୁ ତୋଳି
ସେଇ ପ୍ରେମେ ହଜି ମଜି, ପ୍ରାଣ ପ୍ରଦୀପ ଦିଆରେ ଜାଳି ॥
ଭୁବନ ମୋହନ ରୂପ ଦରଶନ କରରେ ନୟନ ଭରୀ
ଶ୍ରୀରଙ୍ଗା ଚରଣ ଚିତ୍ତେ କରି ଧ୍ୟାନ (୨ଥର)
ତନୁ ମନ ଧନ ଢାଳି
ଗାଅ ରାଧେ ରାଧେ ରାଧେ ......॥୦॥

ସତନାମ ସ୍ମର ସଦ୍‌ଗୁରୁ ଧର ସତ୍‌ସଙ୍ଗ ଆଶ୍ରୟ କର
ରେ ମନ, ସତ୍ସଙ୍ଗ ଆଶ୍ରୟ କର
ଉଷାରେ ନିଶାରେ ମନ୍ତ୍ରସାଧନ ଯନ୍ତ୍ର ସେ ଯନ୍ତ୍ରୀ ତୋର
ରେ ମନ, ଯନ୍ତ୍ର ସେ ଯନ୍ତ୍ରୀ ତୋର
ଜୀବନ ରଥରେ ସାରଥି ରୂପରେ ଦିଅରେ ତାହାଙ୍କୁ ବରି
ମାନ ଅପମାନ ତାଡନ ପିଡନ (୨ଥର)
ପାଅରେ ପ୍ରସାଦ ଭଳି
ଗାଅ ରାଧେ ରାଧେ ରାଧେ ......॥୧॥

ଦିବା ଅବସାନ ହୁଅ ସଚେତନ ସମ୍ମୁଖେ କର୍ମ ଆହ୍ୱାନ
ରେ ମନ, ସମ୍ମୁଖେ କର୍ମ ଆହ୍ୱାନ
ପରମପିତାଙ୍କ ଅମୃତ ସନ୍ତାନ କର ଆତ୍ମ ସମର୍ପଣ
ରେ ମନ, କର ଆତ୍ମ ସମର୍ପଣ
ଯାଗରେ ଆର୍ଯ୍ୟ ନବୀନ ସୂର୍ଯ୍ୟ ଆଚାର୍ଯ୍ୟଙ୍କୁ ଅନୁସରି
ଝଞ୍ଜାବେଗେ ଅଗ୍ନିରାଗେ (୨ଥର)
ଦ୍ୱନ୍ଦ ବାଧା ବିଘ୍ନ ଦଳି
ଗାଅ ରାଧେ ରାଧେ ରାଧେ....... ॥୨॥



# ଘାଟିଆ ଭାଇରେ ନାଉରିଆ ଭାଇ

ଘାଟିଆ ଭାଇରେ ନାଉରିଆ ଭାଇ (୨ଥର)
ଆରକୂଳେ ଲଗା ତରୀ ହୋ...
ଆରକୂଳେ ଲଗା ତରୀ (॥)
ସଂସାର ସାଗରୁ ପାରିକରି ଦେବୁ (୨ଥର)
ତୋ ହାତେ ଆହୁଲା ମାରି ହୋ (୪ଥର)
ଘାଟିଆ ଭାଇରେ.................... ॥୦॥

ଜୀବନ ନଉକାପରେ ତୁହି ଏକା ମଂଗୁଆଳ
ସଂସାର ବାରିଧି ଜଳେ ଭାସେ
ଦିଗବାଗ ଦିଶୁନାହିଁ ଆତଙ୍କରେ ବୁଡେ ମୁହିଁ
ଦୁନିଆ ଅନ୍ଧାର ପରି ଦିଶେ (॥)
ଆସୁଛି ଝଡ ବତାସ...
ଆସୁଛି ଝଡ ବତାସ ଦୁଃଖଭରା ସହତାସ (୨ଥର)
ସଲଖରେ ମଙ୍ଗ ଥିବୁ ଧରି ହୋ... (୪ଥର)
ଘାଟିଆ ଭାଇରେ.....................॥୧॥

କାତ ମୋର ପାଉନାହିଁ ଅନୁକୂଳ ନାଆ ନେଇ
ଭସାଇ ଦିଅରେ ଆରପାରେ
ପାଲ ମୁଁ ଦେଇଛି ମେଲି ତୋ ଠାରେ ଭରସା କଲି
ନିରାଶେ ମୁଁ ଆଶା ଦିଅ ବାରେ (॥)
ଦଦରା ନାବରେ ମୋର...
ଦଦରା ନାବରେ ମୋର ତୁହି ଏକା କର୍ଣ୍ଣଧାର (୨ଥର)
ତୁମରି ନାମରେ ହେବି ପାରି ହୋ... (୪ଥର)
ଘାଟିଆ ଭାଇରେ......................॥୨॥

# ଜନମ ଦେଲ ଯଦି କରୁଣା କର ପ୍ରଭୁ

ଜନମ ଦେଲ ଯଦି କରୁଣା କର ପ୍ରଭୁ (୨ଥର)
ସେବିବି ମୁଁ ତୁମ ଚରଣ
ମହାପ୍ରଭୁ ସେବିବି ମୁଁ ତୁମ ଚରଣ
ଜନମ ଦେଲ... ||୦||

ଆସୁ ଯେତେ ବାଧା ସହିଯିବି ସବୁ
ନଛାଡ଼ିବି ତୁମ ଚରଣ (||)
ଚରଣ ଧୂଳି ଯାହା ଚାଲିବା ପଥରେ ତାହା
ମଣିଷ କୂଳ କରେ ତାରଣ
ସଂସାରର ଅନ୍ଧକାରେ ଆଲୋକ ସେ ବିତରେ (୨ଥର)
ପ୍ରବୃତ୍ତି ଠାରୁ କରେ ବାରଣ
ଜନମ ଦେଲ... ||୧||

ତୁମେ ପରମ ପିତା ଗୁରୁ ଇଷ୍ଟ ଦେବତା
ସର୍ବ ସଙ୍ଗଳ ତୁମ ନାମ
ଆହେ ପରମ ସତ୍ତା ଦେଲ ଏହି ବାରତା
ସଂସାରୁ ଅପସରୁ ମରଣ
ଜୀବନ ନଉକା ମୋର ଚଳାଅ ପ୍ରାଣେଶ୍ୱର (୨ଥର)
ମାଗୁଣି କରେ ଅକିଞ୍ଚନ
ଜନମ ଦେଲ... ||୨||



# ଜାଣିନାହିଁ ପ୍ରଭୁ ତୁମକୁ ଜୀବନେ

ଜାଣିନାହିଁ ପ୍ରଭୁ ତୁମକୁ ଜୀବନେ
ପାଇଛି କି ନାହିଁ ଭଲ
ଜାଣିଛି ଏତିକି ତୁମ ବିନା ମୋର (୨ଥର)
ଜୀବନର ନାହିଁ ମୂଲ (୨ଥର)
ଜାଣିନାହିଁ ... ||୦||

ହଜି ନିଜେ ମନେ ଏକାକି ବି ଜନେ
ଦେଖେ ଏ ଜୀବନ ଶୂନ୍ୟ
ପଲକେ ଦେଖୁଛି ତୁମରି ପରଶେ
ରହିଛି ସବୁତ ପୂର୍ଣ୍ଣ
କେମିତି ଜାଣିବି ଏଇ ଦୁନିଆରେ (୨ଥର)
କିଏ ମନ୍ଦ କିଏ ଭଲ (୨ଥର)
ଜାଣିନାହିଁ ... ||୧||

ବୁଝିଛି ଯେତିକି ତୁମକୁ ସେତିକି
ଝରିଛି ଅନ୍ତରୁ ଲୁହ
ମରଣ ଯାତନା ସହିଛି ସେତିକି
ତୁଟିଛି ଜୀବନ ମୋହ
ଜାଣିନାହିଁ ପ୍ରଭୁ କେଉଁ ଭାବେ ଅବା (୨ଥର)
ତୁମକୁ ପାଇବି ଭଲ (୨ଥର)
ଜାଣିନାହିଁ .... ||୨||

# ଜପେ ମୋ ମନ କନ୍ଦରେ

ଜପେ ମୋ ମନ କନ୍ଦରେ
ସ୍ମରେ ମୁଁ ନିତି ଅନ୍ତରେ
ତୁମ ନାମ ଭଳି ଆଖି ଲୁହ ଢାଳି
ଡାକୁଚି ମୁଁ ନିରନ୍ତରେ
ଜପେ ମୋ... ॥୦॥

ଦୟାମୟ ତୁମ ଦୟାକର ପ୍ରଭୁ
ଏହି ଦୀନକୁ ତୁମର
ଏ ଭବ ସାଗରୁ ପାରିକର ମୋତେ
ଦେଇ କରୁଣାର ଧାର
ତୁଟାଇ ମନରୁ ସକଳ କାମନା (୨ଥର)
ପ୍ରୀତି ଭରା ଏ ହୃଦୟେ
ଜପେ ମୋ.. ॥୧॥

ତୁମ ଇଙ୍ଗିତରେ ସାରା ଏ ଜଗତ
ଚାଲୁଅଛି ଦିନରାତି
ଉଦ୍ଧାର କରିବା ପାଇଁ ଆସିଅଛ
ହେ ମୋ ଜୀବନ ସାଥି
ତୁମ ଛବି ନିତି ଆଙ୍କି ହୋଇଉଠୁ
ଏ ମୋ ମନ ମାନସରେ
ଜପେ ମୋ... ॥୨॥



# ଜୀବନ ସାଗରେ ନାଆ ବାହୁ ବାହୁ

ଜୀବନ ସାଗରେ ନାଆ ବାହୁ ବାହୁ
ହେଲି ଯେବେ ଦିଗହରା
ଅକୂଳରେ ଦେଲ କୂଳର ସନ୍ଧାନ (୨ଥର)
ତୁମେ ମୋ ଧ୍ରୁବତାରା
ଜୀବନ ସାଗରେ..... ॥୦॥

ପ୍ରେମମୟ ତୁମେ ଦୟାଲ୍ ଠାକୁର, ପ୍ରେମ ଦେଇଛ ଧରା
ତୁମ ସତ୍‌ନାମେ ଆଶୀଷର ଛର, ପ୍ରୀତି ମନ୍ଦାକିନୀ ଧାରା
କୋଟି ଜନମର କଳୁଷ କାଳିମା (୨ଥର)
ସବୁ ଧୋଇ ଦେଲ ପରା
ଜୀବନ ସାଗରେ .... ॥୧॥

ଯଜନ ଯାଜନ ଇଷ୍ଟଭୃତି ତୁମ, ଜୀବନ ନିତିର ପାଇଁ
ପାପ ତାପ ଜ୍ୱାଳା ଯନ୍ତ୍ରଣାରେ ପଡ଼ି, କେବେ ବି ଭୁଲିବି ନାହିଁ
ସଂସାର ତାପ ଜ୍ୱାଳା ଯନ୍ତ୍ରଣାରେ ପଡି, କେବେଦ ବି ଭୁଲିବି ନାହିଁ
ସଂସାର ସାଗରେ ଅମା ଅନ୍ଧାରେ
ତୁମେ ଜଗଜ୍ୟୋତି ପରା
ଜୀବନ ସାଗରେ... ॥୨॥

ଅଲୋଡ଼ା ସଂସାରେ ଅସାର ଜୀବନ, ଯେତେବେଳେ ଯିବ ଝରି
ସେହି ସତ ନାମ ପଥର ସଙ୍ଖାଳି, ତୁମେ ରାମ କୃଷ୍ଣ ହରି,
ଜୀବନ ଦୀପ ମୋ ଲିଭି ଗଲା ବେଳେ
ତୁମେ ପାଖେ ଥିବ ପରା
ଜୀବନ ସାଗରେ....॥୩॥

# ଜଗତ ଜୀବନ ନାଥ ଘେନ ମୋ ଜୁହାର

ଜଗତ ଜୀବନ ନାଥ ଘେନ ମୋ ଜୁହାର
ଶ୍ରୀପଦ ପଙ୍କଜେ କୋଟି କୋଟି ନମସ୍କାର
ଜଗତ ଜୀବନ... ॥୦॥

ମନମୋହିନୀ ଜନମ ଦେଲେ ମନମୋହନ
ତୁମରି ଆଭା ଜ୍ୟୋତିପ୍ରକାଶେ ରବିନିଉନ
ତୁମ ଭଜନ ଅମୃତ ସ୍ରମ, ପାଗଳ କରିଛି ସଂସାର
ଜଗତ ଜୀବନ... ॥୧॥

ଦୁଃଖ ଯାତନା ଆସୁ ଟୀବନେ ଶୋଚନା ନାହିଁ
ଦେଖିଲା ଦିନୁ ସାମ୍ୟ ମୁରତି ଭୁଲି ହୁଏ ନାହିଁ
ଦର ହାସିତ ପଙ୍କଜ ମୁଖ ଦେଖିଲେ ଲକିତ ଅଧର
ଜଗତ ଜୀବନ... ॥୨॥

ଅଳିକ ସଂସାର ଭେଳିବ ପାଶୋରା ପଥନୁସାରୀ
ଭରସା ସତତ ଥାଉ ତୁମ ପଦେ ତବ ପରିଚାରୀ
ଶ୍ରବଣ କୁହୁରେ ତୁମରି ମହିମା ଝଙ୍କୃତ ହୁଏ ବାରମ୍ବାର
ଜଗତ ଜୀବନ ... ॥୩॥



# ତୁମେ ଅନନ୍ତ ତୁମେ ଅସୀମ

ତୁମେ ଅନନ୍ତ ତୁମେ ଅସୀମ
(ପ୍ରଭୁ) ତୁମକୁ ଧରିବା ଲାଗି ଶକତି କାହିଁ ମମ
ତୁମେ ଅନନ୍ତ.... ॥୦॥
କରୁଣା କରିବାରେ ଦେଇଛ ଧରା ମୋରେ
ସେ ଲାଗି ତୁମ ପୂଜା ଲଭିଛି ପ୍ରିୟତମ (॥)
ତୁମେ ଅନନ୍ତ ... ॥୧॥

ବିଶ୍ୱ ତବ ଧୂଳି ଖେଳା
ମୋତେ ସେ ଅବୋଧ ଲୀଳା
ତବ ଜ୍ଞାନାଞ୍ଜନ ବିନା
ବୁଝିବାରେ କେ ବା କ୍ଷମ (॥)
ତୁମେ ଅନନ୍ତ ... ॥୨॥

ତୁମେ ଜଗଦୀଶ୍ୱର ମୁଁ ଦୀନ ସେବକ ଛାର
କେଉଁ ଗୁଣ ଅଧିକାରେ ଯିବି ତୁମ ସନ୍ନିଧାନ (॥)
ବହେ ଜୀବନ ସରଣୀ
ଭାସି ଯାଏ ମୋ ତରଣୀ (॥)
ବାହିବ କେଉଁ ଉଜାଣି କୁହ ହେ ତୁମ ସମ (୨ଥର)
ତୁମେ ଅନନ୍ତ ... ॥୩॥

# ତୁମେ ପରମ ଦରଦୀ ପ୍ରେମମୟ

ତୁମେ ପରମ ଦରଦୀ ପ୍ରେମମୟ (୨ଥର)
ଛାର ମଣିଷ ମୁଁ, ସେ ପ୍ରେମସାଗର (୨ଥର)
କହିବି କିପରି କୁହ...
ତୁମେ ପରମ................||୦||

ସୁନ୍ଦର ଏ ବିଶ୍ୱ, ସୁନ୍ଦର ଏ ଧରା
ସୁନ୍ଦର ଗିରି କାନନ
ଏଇ ଦୁନିଆରେ ସବୁତ ସୁନ୍ଦର (୨ଥର)
ତୁମଠାରୁ କିଏ କୁହ...
ତୁମେ ପରମ.............. ||୧||

ଯୁଗେ ଯୁଗେ ତୁମେ ସହିଛ କଷଣ
ମାନବ ଉଦ୍ଧାର ପାଇଁ
ଅକୂଳରେ କୂଳ ଦେବାକୁ ଆସିଛ
ଏବେ ଅନୁକୂଳ ହୋଇ
ତୁମ ନୟନରୁ ଝରେ ଯେ ଲୋତକ (୨ଥର)
ପୋଛି ପାରିବିକି କୁହ...
ତୁମେ ପରମ............ ||୨||

ଅନନ୍ତ ସାଗର ଅନନ୍ତ ଆକାଶ
ଅନନ୍ତ ମନ ବାସନା
ଅନନ୍ତ ଜନମ ବିତାଇ ତଥାପି
ଭୂଲେ ତୁମ ଉପାସନା
ଅନନ୍ତ କରୁଣା କଣିକା କଣାଏ (୨ଥର)
ପାଇବିକି ନାହିଁ କୁହ ...
ତୁମେ ପରମ ............ ||୩||



# ତୁମେ ସ୍ରଷ୍ଟା ତୁମ ସୃଷ୍ଟି

ତୁମେ ସ୍ରଷ୍ଟା ତୁମ ସୃଷ୍ଟି
କି ସୁନ୍ଦର ବିଭବରେ
ତୁମେ ସତ୍ୟ ତୁମେ ଶାନ୍ତ
ଦୟା, କ୍ଷମା, କରୁଣାରେ (॥)
ତୁମେ ସ୍ରଷ୍ଟା ........... ||୦||

ତୁମେ ଝରା ଶେଫାଳିର ସୌରଭ
ତୁମେ ନିଃସ୍ୱ ପ୍ରାଣର ବଇଭବ (॥)
ଅନାଥର ଅଗଛିର ଆପଣା ଭରସାରେ (୨ଥର)
ତୁମେ ସ୍ରଷ୍ଟା......... ||୧||

ତୁମେ ସକଳ ସତ୍ତାର ଆପୂରଣୀ
ତୁମେ ଅନାହତ ନାଦ ସପ୍ତଧ୍ୱନୀ (॥)
ଭାବାତୀତ ଗୁଣାତୀତ ପରଂବ୍ରହ୍ମ ଚରାଚରେ (୨ଥର)
ତୁମେ ସ୍ରଷ୍ଟା....... ||୨||

ଆଜି ପାପି ହୁଏ ସାଧୁ ଭକ୍ତ ଶ୍ରେଷ୍ଠ
କେତେ କାମୁକ, ମଦ୍ୟପ ଇଷ୍ଟନିଷ୍ଠ (॥)
ହେଲେ ଦକ୍ଷ ହେଲେ ମୋକ୍ଷ, ପାଦଧୂଳି ପରଶରେ (୨ଥର)
ତୁମେ ସ୍ୟଷ୍ଟା.....||୩||

# ତୁମେ ଈଶ୍ୱର ସାରା ବିଶ୍ୱର

ତୁମେ ଈଶ୍ୱର ସାରା ବିଶ୍ୱର
ହେ ଗୁରୁ ମୋର ଦୟାଳ ଠାକୁର (।।)
ତୁମେ ଈଶ୍ୱର.... ।।୦।।

ତୁମେ ହିଁ ସ୍ୱର ତୁମେ ହିଁ ତାଳ ଆ... ଆ... (୨ଥର)
ତୁମେ ହିଁ ନାଦ ତୁମେ ହିଁ ଲୟ (।।)
ତୁମେ ଜୀବନ ବୀଣାର ଝଙ୍କାର (୨ଥର)
ତୁମେ ଆଧାର ସକଳ ସୃଷ୍ଟିର
ତୁମେ ଈଶ୍ୱର.... ।।୧।।

ରାମକୃଷ୍ଣ ତୁମେ ଯୀଶୁ ବୁଦ୍ଧ ତୁମେ ଆ.... ଆ... (୨ଥର)
କେତେ ଯୁଗେ ଜନମିଛ କେତେ ନାମେ (।।)
ଦୁଷ୍ଟଜନ ତାର ସନ୍ଥ ଜନପାଳ (୨ଥର)
ସବୁ ପ୍ରତିକୂଳେ ତୁମେ ଅନୁକୂଳ
ତୁମେ ଈଶ୍ୱର..... ।।୨।।



# ତୁମକୁ ଜୀବାନ ଲଭିଛି ମରମେ

ତୁମକୁ ଜୀବନେ ଲଭିଛି ମରମେ (୨ଥର)
ତୁମେ ପ୍ରେମମୟ ତୁମେ ଦୟାମୟ (୨ଥର)
ପରମ ଦରଦୀ ତୁମେ
ତୁମକୁ ଜୀବନେ ....... ।।୦।।

ତୁମେ ଶକ୍ତିଦାତା ତୁମେ ମୁକ୍ତିଦାତା
ତୁମେ ପରମ ପିତା ବିଶ୍ୱର
ତୁମେ ପ୍ରାଣର ତୃପ୍ତି ତୁମେ ନୟନର ଜ୍ୟୋତି
ସର୍ବ ଶକ୍ତିମାନ ଈଶ୍ୱର (।।)
ଶୀତଳ ସୀମାରେ ସାଗର ଅମ୍ବରେ (୨ଥର)
ଜଡାଇ ଧରିଛ ତୁମେ
ତୁମକୁ ଜୀବନେ .......... ।।୧।।

ତୁମେ ମନ୍ତ୍ରଦାତା ତୁମେ ଜ୍ଞାନଦାତା
ତୁମେ ସବୁରିତ ଭଗବାନ
ତୁମେ ଅଗତିର ଗତି ଧର୍ମର ସାରଥି
ମୋତେ କରିଦେଲ ଭାଗ୍ୟବାନ (।।)
କରୁଣା ସାଗର ଶରଣ ଦେଇଛ (୨)
ବିରାଜିଛ ନିଜ ନାମେ
ତୁମକୁ ଜୀବନେ........ ।।୨।।

# ତବ ସୁନ୍ଦର ସେହି ରୂପ

ତବ ସୁନ୍ଦର ସେହି ରୂପ, ମମ ହୃଦୟେ ଅବିଭରାମ ( ୨ ଥର)
ସଦା ବିରାଜିଛି, ପ୍ରଶମ ( ୨ ଥର)
ପାରେନା ଦେଖି ତାରେ, ଅନ୍ଧ ମୁଁ ପ୍ରିୟତମ.....
ତବ ସୁନ୍ଦର ସେହି ରୂପ, ସଦା ବିରାଜେ ଅବିରାମ...... ||୦||

ନୟନେ ଦେଖେ, ଯାହା ମୁଁ ସବୁ
ତୁମରି ରୂପର ଛାୟା
ପ୍ରକାଶଇ ଯାହା ଚରାଚରେ ପ୍ରଭୁ
ସବୁତ ତୁମରି କାୟା (||)
ପାରେନା ବୁଝି, ବିଷୟାରେ ମଜ୍ଜି ( ୨ ଥର)
ମାୟାରେ ହୋଇ ଭ୍ରମ, ଅନ୍ଧ ମୁଁ ପ୍ରିୟତମ...
ତବ ସୁନ୍ଦର ସେହି ରୂପ, ସଦା ବିରାଜେ ଅବିରାମ....... ||୧||

ତବ ପ୍ରେମ ସୁଧା, ହୋଇ ରସଧାରା
ବହଇ ଏ ରସାସାରା
ପ୍ରେମ ପାରାବାରେ, ସଦା ହରଷରେ
ଭାସନ୍ତି ଗ୍ରହତାରା
ବିଷାଦେ ମୁହିଁ, ହୁଏ ଅନ୍ଧ ମୁଁ ପ୍ରିୟତମ.....
ତବ ସୁନ୍ଦର ଦେହି ରୂପ, ସଦା ବିରାଜେ ଅବିରାମ..... ||୨||

ଜୀବ ଜଗତରେ ଯାହା ଅଛି ସବୁ
ବୁଝିଛି ଏ ମିଛମାୟା
ଜୀବନେ ଯାହା ପାଇଅଛି ପ୍ରଭୁ
ସବୁତ ତୁମରି ଦୟା
ଗାଇ ତୁମ ନାମ, ଯାଉ ଏ ଜୀବନ
ଏତିକି ଅଳି ମମ.... ଅନ୍ଧ ମୁଁ ପ୍ରିୟତମ...
ତବ ସୁନ୍ଦର ସେହି ରୂପ, ସଦା ବିରାଜେ ଅବିରାମ.... ||୩||



# ତୁମେ ଯେ ଜଗତ ମୟ

ତୁମେ ଯେ ଜଗତମୟ... ପ୍ରଭୁ
ତୁମେ ଯେ ଜଗତମୟ
ବିଶ୍ୱ ଚରାଚର ସର୍ଜନା ତୁମର ( ୨ ଥର)
ଅନୁପମ ଲିଳାମୟ
ତୁମେ ଯେ.................. ||୦||

ରୂପେ ରୂପେ ତବ ଅରୂପ ଚେତନା
ପ୍ରେମ ଅପଘନ ମାନସୀ ତନିମା (||)
ରୂପ ବିନା କାହୁଁ ଲଭିବୁ ତୁମରି ( ୨ ଥର)
ଦୁଲ୍ଲର୍ଭ ଜ୍ୟୋତିର୍ମୟ
ତୁମେ ଯେ......... ||୧||

ଫୁଲର ସୁବାସେ ପକ୍ଷୀର କୁଜନେ
କୁଲ୍ଲୋଳିନୀ କଳା ମଞ୍ଜୁଳ ସ୍ୱନେ (||)
ତୁମରି ପ୍ରତିଟି ରାଜେ ନିରନ୍ତର ( ୨ ଥର)
ଗାଏ ସୃଷ୍ଟି ତବ ଜୟ
ତୁମେ ଯେ....... ||୨||

ଅନନ୍ତରର ଯେତେ ବିପାକ ବେଦନା
ମନତଳେ କେତେ ଅଶୁଭ କାମନା (||)
ତବ ପୁଣ୍ୟନାମ ସ୍ମରଣେ ମନନେ ( ୨ ଥର)
ଏ ଜୀବନ ବରାଭୟ
ତୁମେ ଯେ........... ||୩||

# ତୁମକୁ ଦେଖିଛି ମୁହିଁ ସାଗରର ଗରଜନେ

ତୁମକୁ ଦେଖିଛି ମୁହିଁ ସାଗରର ଗରଜନେ
ତୁମକୁ ପାଇଛି ମୁହିଁ ଦୁଃଖ ଆଉ ଦହନେ (।।)
କୋକିଳର କୂଜନେ, ଭ୍ରମରର ଗୁଞ୍ଜନେ
ତୁମକୁ ଦେଖିଛି.......... ।।୦।।

ବିଶ୍ୱ ଜୀବନ ତୁମେ ବିଶ୍ୱ ଗୌରବ
ଜରା ମରଣର ତୁମେ ଶାନ୍ତିର ବିଭବ (।।)
ପିଡନର ଶିହରଣେ ପୁଲକର କମ୍ପନେ
ତୁମକୁ ଦେଖିଛି................ ।।୧।।

ମେଘଭରା ଆକାଶରେ ପ୍ରଣୟର ଜୋଛନା
କୁଶଳ ମରୁ ହୃଦୟେ ତୃଷାର ଝରଣା (।।)
ବରଷାର ସ୍ୱନେ ସ୍ୱନେ ଜୀବନର ସ୍ପନ୍ଦନେ
ତୁମକୁ ଦେଖିଛି..... ।।୨।।



# ତୁମକୁ ଧରି ମୁଁ ଯେବେଠୁ ଚାଲିଛି

ତୁମକୁ ଧରି ମୁଁ ଯେବେଠୁ ଚାଲିଛି, ପ୍ରଭୁ ... (୨ଥର)
କେତେ ଅପବାଦ ମୋ ପାଇଁ ସହିଛ
ନିରାଶା ବୁକୁରେ ଆଶାର ଭରସା (୨ଥର)
ଦେଇ ପ୍ରଭୁ ତୋଳିନେଇଛ....
ତୁମକୁ ଧରି............... ।।୦।।

ମୋ କଣ୍ଟକ ପଥେ, ପୁଷ୍ପମୟ ତୁମେ
ଅନ୍ଧକାରେ ଧ୍ରୁବତାରା
ତୁମବିନା ମୋର ଜୀବନଟା ସାରା
ହୋଇଥାନ୍ତା ବିଷଭରା
ଲହୁ ଲହୁ ଢାଳି ଆପଣାର କରି
ପ୍ରଭୁ ମୋତେ ବୋହି ନେଇଛ...
ତୁମକୁ ଧରି.............. ।।୧।।

ଆଶାର ସାଗରେ ଶୀତଳ ନିର୍ଝର
ଚେତନାରେ ଚିଦାନନ୍ଦ
ସ୍ମୃତିର ଉପାସ୍ୟ ପ୍ରୀତି ପୂଜା ତୁମେ
ମିଳନର ମହାଛନ୍ଦ
ସକଳ କଳଙ୍କ ଧୋଇ ଦେଲ ମୋର
ଧନ୍ୟ ପୂଣ୍ୟ ମୋତେ କରିଛ
ତୁମକୁ ଧରି.............. ।।୨।।

## ତୁମ ନାମେ କି ରସ ଭରିଛ ହେ

ତୁମ ନାମେ କି ରସ ଭରିଛ ହେ (୨ଥର)
ସେହି ରସେ ରସି ଗୋପନରେ ବସି (୨ଥର)
ବିଶ୍ୱ ଜଡାଇଛ ହେ
ତୁମ ନାମେ... ||୦||

ଯେବେ ଯେବେ ହୁଏ ଧରମର ହାନି
ଅଜ୍ଞାନୀ ମାନବ ହୁଏ ଅଭିମାନୀ (||)
ନର ଦେହ ଧରି ଯୁଗେ ଯଗେ ଅସେ (୨ଥର)
ନାମେ ଭୁଲାଇଛ ହେ
ତୁମ ନାମେ... ||୧||

ଅନନ୍ଦ ନୁହେଁ ସେ ନାହିଁ ଯାର ଆଖି
ଅନ୍ଧ ତୁମ ରୂପ ନ ପାରଇ ଦେଖି (||)
ଜ୍ୟୋତିର୍ମାନ ତୁମେ ସବୁରି ପରାଣେ (୨ଥର)
ଜ୍ୟୋତି ରୂପେ ଅଛ ହେ
ତୁମ ନାମେ... ||୨||

ତୁମ ଲୀଳାଖେଳା ଗୋଚର କାହାକୁ
ତୁମେ ଆସି ନିଜେ ବୁଝାଅ ତୁମକୁ (||)
ଦୟାମୟ ତୁମ ଦୟାର ପତାକା (୨ଥର)
ତୁମେ ଉଡାଇଛ ହେ
ତୁମ ନାମେ... ||୩||



## ଦୟାମୟ ପ୍ରଭୁମୋର

ଦୟାମୟ ପ୍ରଭୁମୋର କରୁଣା ସାଗର (୨ଥର)
ଅନନ୍ତ କରୁଣା ଯାର (୨ଥର)
ନାହିଁ ପଟାନ୍ତର...
ଦୟାମୟ....... ||୦||

ଅଗତିର ଗତି ଦାନ ପତିତପାବନ
ଅନାଥର ନାଥ ସେ ଯେ ଜଗତ ଜୀବନ (||)
ମୋ ହୃଦୟ ନିଧି ସେ ଯେ (୨ଥର)
ପରମ ଈଶ୍ୱର...
ଦୟାମୟ.... ||୧||

ପ୍ରେମର ମନ୍ଦିରେ ଖୋଜେ ତା ପୂଜା ଆରତୀ
ପ୍ରେମର ପିୟାସୀ ସେ ଯେ ସୁନ୍ଦର ମୁରତି (||)
ଜନମ ଜନମ ଧରି (୨ଥର)
ଖୋଜୁଛି ପୟର....
ଦୟାମୟ.......... ||୨||

ଏ ଜୀବନେ ମାଗୁଛି ମୁଁ ଶ୍ରୀ ଚରଣ ଧୂଳି
ଜନମ ଜନମ ଧରି ହେଉଥିବି ବୋଳି (||)
ତୁମ ସେବା ହେଉ ପ୍ରଭୁ (୨ଥର)
ସମ୍ବଳ ମୋହର...
ଦୟାମୟ......... ||୩||

# ଦିଗହଜା ପଥହରା

ଦିଗହଜା ପଥହରା ପଥିକର ଧ୍ରୁବତାରା (୨ଥର)
ସତ୍ୟ ସନାତନ ହେ ଚିର ନୂତନ (୨ଥର)
ଝରାଅ ଅମୀୟ ଧାରା...
ଦିଗହଜା............... ||୦||

ଜୀବନେ ତୁମକୁ ଦେଇନି ତ କିଛି
ପାଇଛି ସକଳ ଆଜି
ଦଗ୍ଧ ପରାଣ ସ୍ନିଗ୍ଧ କରିଛ
ନାମର ଝଙ୍କାର ସଜି
ବିଶ୍ୱ ଜୀବନ ହେ ପ୍ରିୟପରମ (୨ଥର)
ପ୍ରଣୟର ଫଲଗୁ ଧାରା (୨ଥର)
ଦିଗହଜା.................... ||୧||

ଯଜନ ଯାଜନ ଇଷ୍ଟଭରଣ, ତ୍ରିବେଣୀରେ ଧାରେ ଧାରେ
ଜୀବନ ବୃଦ୍ଧିର ପୁଲ୍ଲହନ ହସେ, ଶାନ୍ତିର ଢେଉ ଖେଳେ
ମୁକ୍ତି କପୋତ ଗାଏ ଦୂରେ ତେଜି (୨ଥର)
ଦୈନ୍ୟ ଜୀବନ ସାରା (୨ଥର)
ଦିଗହଜା.................. ||୨||

ତବ ନାମ ସୁରେ ଏ ମରୁ ପରାଣ, ମୁଞ୍ଜରୀ ଉଠେ ଆଜି
ଛିନ୍ନ ବୀଣାରେ ମହ୍ଲାର ଶୁଭେ, ମଳୟ ପରଶ ବାଜି
ତବ ନାମ ଗାନେ ଲିଭିଯାଏ ପ୍ରଭୁ (୨ଥର)
ଶତ ବେଦନାର ଧାରା (୨ଥର)
ଦିଗହଜା.................. ||୩||



# ଦୁଆରଂ ଖୋଲି ଦେଖରେ

ଦୁଆର ଖୋଲି ଦେଖରେ
ତାର ଭୁବନ ଭୁଲା ରୂପରେ (||)
ଯୁଗ ଯୁଗର କେତେ ନିଜର (୨ଥର)
ଦରଦ ଭରା ଡାକରେ
ଦୁଆର.......... ||୦||

ବିଶ୍ୱେ ଅଭିନନବ ଅପୂର୍ବ ସୁନ୍ଦର
ବିଲୋକାନ୍ତି ସୁର, ନର ଶ୍ରୀମନ୍ଦିର
ସ୍ପନ୍ଦିତ ହେବରେ ଭାବାଦର୍ଶ ତାର
ଧ୍ୱନିତ ହେବରେ କଥାର ନିର୍ଝର
ମନ୍ଦ୍ରିତ ହେବ ମହା ସଂଗୀତ (୨ଥର)
ବିଶ୍ୱ ଧର୍ମ ମହାତୀର୍ଥରେ
ଦୁଆର............. ||୧||

ଆର୍ତ୍ତ ଦୁଃଖୀ କେତେ ପାଇବେ ସାନ୍ତ୍ୱନା
ଅଶାନ୍ତ ପ୍ରାଣରେ ଶାନ୍ତିର ମୂର୍ଚ୍ଛନା
ଭକତ ସାଧକ ଜୀବନେ ଲଭିବ
ସମ୍ମୁତ୍ଥାନ ଭାବ ଅଇଶୀ ଚେତନା
ଧନୀ ମାନୀ ଗୁଣି ସାଧୁ ସନ୍ଥ ମୁନି (୨ଥର)
ସାଧକର ସମାବେଶରେ
ଦୁଆର......... ||୨||

ଜୀବନ୍ତ ଜାଗ୍ରତ ଲକ୍ଷ୍ମୀ ନାରାୟଣ
ପ୍ରାଣ ଭରି ଜୀବ କରରେ ଦର୍ଶନ
ନିତ୍ୟ ବୈକୁଣ୍ଠ ନବ ବୃନ୍ଦାବନ
ଭକ୍ତ ଭଗବାନ ଅପୂର୍ବ ମିଳନ
ସର୍ବ ଦେବାଦେବୀ ମିଳନ ବେଦୀ (୨ଥର)
ପୁରୁଷୋତ୍ତମ ପୀଠରେ
ଦୁଆର......... ||୩||

# ଧରମର ମାନେ ଦେଲ କହି

ଧରମର ମାନେ ଦେଲ କହି
ଦୟାଲ ଠାକୁର ଦୟାବହି (।।)
ମରଣ ମୁହଁରୁ ଟାଣି ଆଣି ମୋତେ (୨ଥର)
ବଞ୍ଚିବା ବଢ଼ିବା ଦେଲ ଶିଖାଇ, ଆ.....
ଧରମର ମାନେ......... ।।୦।।

ଅସାର ସଂସାର ମାୟା ମରିଚିକା
ଶାନ୍ତି ଖୋଜି ମିଳେ ଅଶାନ୍ତିର ଧୋକା
ଅଛି ଏ ଜୀବନେ ଘୃଣା ପରିହାସ
କଣ୍ଟାର ଆଘାତେ ବେଳ ହେଲା ଶେଷ
ନିରାଶ ମନରୁ ହରିଲ ବିରସ (୨ଥର)
ଆଶାର ପ୍ରଦୀପ ଦେଲ ଜଳାଇ
ଧରମର ମାନେ.... ।।୧।।

ଅଳପ ଯେତିକି ରହିଲା ଜୀବନ
ସଞ୍ଚିବି ଘଡ଼ିରେ ସତ୍‌ସଙ୍ଗ ଧନ
ଯଜନ ଯାଜନ ଇଷ୍ଟଭୃତି କରି
ଚାଲୁଥିବି ବାଟ ଆଚାର୍ଯ୍ୟଙ୍କୁ ଧରି
ଆଉ ନ କାନ୍ଦିବି ଲୁହ ନ ଢାଳିବି (୨ଥର)
ଧନ୍ୟ ମୋ ଜୀବନଟ ତୁମରି ପାଇଁ
ଧରମର ମାନେ......।।୨।।



# ପ୍ରଭୁ ତୁମରି ଧିଆନେ

ପ୍ରଭୁ ତୁମରି ଧିଆନେ ତୁମରି ଚରଣେ
ଏ ଜୀବନ ବିତି ଯାଉଗୋ (।।)
ତୁମରି ସେବାରେ ଦିବାରାତି ମୋର (୨ଥର)
ସରସ ସୁନ୍ଦର ହେଉ ଗୋ...
ପ୍ରଭୂ ......... ।।୦।।

ନୟନର ନୀର ଧୋଇ ଶ୍ରୀ ଚରଣ
ଅରପିବି ମନ କୁସୁମ ଚନ୍ଦନ (।।)
ପୂଜା ଉପଚାର କି ଦେବି ସମ୍ଭାର (୨ଥର)
ଏ ହୃଦୟ ବିନା ଆଉଗୋ..
ପ୍ରଭୂ.......... ।।୧।।

ଜାଣେନା ଭକତି ପୂଜା ଆରାଧନା
ନକରି କେମିତି ବଞ୍ଚିବାର ପଥ (୨ଥର)
ସହଜ ସରଳ ହେଉ ଗୋ...
ପ୍ରଭୂ.......... ।।୨।।

କଳୁଷ କାଳିମା ଯେତେ ଜୀବନର
ତୁମରି ପରଶେ ହୋଇଯାଉ ଦୂର (।।)
ତୁମ ଦେଖା ପଥ ଭୁଲିବିନି କେବେ (୨ଥର)
ଦରଦୀ ଠାକୁର ଆଉ ଗୋ
ପ୍ରଭୂ.......... ।।୩।।

# ପ୍ରଭୁ ତୁମ ଶ୍ରୀଚରଣ ବିନା

ପ୍ରଭୁ ତୁମ ଶ୍ରୀଚରଣ ବିନା
ଝଡିଯିବ ମୋର ଜୀବନ କୁସୁମ
ହରାଇ ମହକ ସିନା.... ହୋ....
ପ୍ରଭୁ ତୁମ............. ||୦||

ଅସାର ସଂସାରେ ବାସନା ମଦିରା
ଭରିଅଛି କେତେ ରସର ପସରା (||)
ତୁମ ନାମ ରସ ବିଦା ମୋ ଜୀବନ
ନିରସ ହୋଇ ସିନା.... ହୋ....
ପ୍ରଭୁ ତୁମ............ ||୧||

ଦୁଃଖ ଘନଘଟା ସୁଖର ଜୁଆର
ଆସିଛି ଜୀବନେ କେତେ ବାରବାର (||)
ତୁମ ବିନା ମୋର ଜୀବନ ପ୍ରଦୀପ
ଯାଇଥାନ୍ତା ଲିଭି ସିନା... ହୋ...
ପ୍ରଭୁ ତୁମ.............. ||୨||

ତଥାପି ମନରେ ହୁଏ ଭାବାନ୍ତର
ପ୍ରଭୁବୋଲି କାଳେ କରିବ ଅନ୍ତର (||)
କରୁଛି ଗୁହାରୀ ଚିରଦାସ ବୋଲଇ
କର ବାରେ ମୋତେ ଘେନା... ହୋ..
ପ୍ରଭୁ ତୁମ............. ||୩||



# ପ୍ରଣମେ ବାରବାର ଗୁରୁପାଦ ପଦ୍ମେ

ପ୍ରଣମେ ବାରବାର ଗୁରୁପାଦ ପଦ୍ମେ (୨ଥର)
ବିଭୋର ଏ ମନପ୍ରାଣ (୨ଥର)
ରୂପ ରସ ଗନ୍ଧେ... (୩ ଥର)
ପ୍ରଣମେ............... ||୦||

ସାଗର ତରଙ୍ଗରେ ଝରଣାର ଝଙ୍କାରେ (୨ଥର)
ମନବୀଣା ତୋଳିଅଛି ରାଗିଣୀ (୨ଥର)
ନୀଥର ଏ ଅନ୍ତରେ ଶୁଷ୍କମରୁ ପ୍ରାନ୍ତରେ (୨ଥର)
ଆଶ ସ୍ରୋତ ବହୁଅଛି ଉଜାଣି
ସେହି ସ୍ରୋତେ ଯାଏ ଭାସି (୨ଥର)
ପରମ ଆନନ୍ଦେ... (୩ ଥର)
ପ୍ରଣମେ.............. ||୧||

କର ପଲ୍ଲବ ପରଶେ ତାଙ୍କ ମଙ୍ଗଳ ଆଶିଷେ (୨ଥର)
ପାଇଅଛି ଅମୃତର ସନ୍ଧାନ (୨ଥର)
ସେ ଅମୃତ କରି ପାନ ଶିହରିଲା ତନୁମନ (୨ଥର)
ଛିନ୍ନ ହେଲା ସବୁ ବାଧା ବନ୍ଧନ
ନାଚେ ମନ ତାଳେ ତାଳେ (୨ଥର)
ମିଳନର ଛାନ୍ଦେ... (୩ଥର)
ପ୍ରଣମେ.............. ||୨||

ଗୁରୁକୃପା କରି ସାର ପଙ୍ଗୁ ଲଙ୍ଘେ ଗିରି ପାର (୨ଥର)
ଶୁଷ୍କତରୁ କିଶୋଳୟେ ଶୋଭିତ (୨ଥର)
ଗୁରୁମୋର ଗଉରବ, ଗୁରୁମୋର ଶଉରଭ (୨ଥର)
ଗୁରୁମୋର ହୃଦୟର ସଙ୍ଗୀତ
ମୋ ଜୀବନ ସେ ଚରଣେ (୨ଥର)
ଭକ୍ତି ଡ଼ୋରେ ବାନ୍ଧେ.... (୩ଥର)
ପ୍ରଣମେ............. ||୩||

# ପୁରୁଷୋତ୍ତମ ଜୟ ଜୟ

ପୁରୁଷୋତ୍ତମ ଜୟ ଜୟ
ଶ୍ରୀ ଅନୁକୂଳ ଜୟ ଜୟ (।।)
ବନ୍ଦେ ପୁରୁଷୋତ୍ତମ (୪ଥର)
ପୁରୁଷୋତ୍ତମ............. ।।୦।।

କୋଟିଏ କଣ୍ଠରେ ଉଠେ ଆଜି ଧ୍ୱନି
ଜୟ ପ୍ରେମମୟ ଶ୍ରୀ ଅନୁକୂଳ (।।)
ପୁରୁଷୋତ୍ତମ............... ।।୧।।

ଅପରୂପ ହେ ବିଶ୍ୱରୂପ, ନରଲୀଳାର ଅନୁରୂପ (୨ଥର)
ଚଲା ବୁଲା ତୁମ ସବୁ କିଛି ପ୍ରଭୁ (୨ଥର)
ସତ୍ୟ ଶିବ ଚିର ସୁନ୍ଦର
ପୁରୁଷୋତ୍ତମ............ ।।୨।।

ରାମଚନ୍ଦ୍ର, ଶ୍ରୀକୃଷ୍ଣ, ବୁଦ୍ଧ, ଯୀଶୁ ରୂପେ ହେଲ ଉଭବ (୨ଥର)
ରସୁଲ ଚୈତନ୍ୟ ରାମକୃଷ୍ଣ ରୂପେ (୨ଥର)
ତୋଳି ଧରଣୀକୁ କଲ ଉଦ୍ଧାର
ପୁରୁଷୋତ୍ତମ........... ।।୩।।

ସର୍ବ ଶେଷେ ନେଲ ଜନମ, ତୁମେ ପୁରୁଷୋତ୍ତମ (୨ଥର)
ଜୀବନ ଆଲୋକେ ଆଲୋକିତ କଲ (୨ଥର)
ମିଛ ମାୟା ଭରା ସାରା ସଂସାର
ପୁରୁଷୋତ୍ତମ.......... ।।୪।।



# ପ୍ରିୟ ପରାଣ ଦେବତା

ପ୍ରିୟ ପରାଣ ଦେବତା ଘେନ ମୋ ଅନ୍ତର କଥା
ବହୁଦିନୁ ହେ ଠାକୁ ରହିଛି ଅକୁହା କଥା (।।)
ପ୍ରିୟ ପରାଣ.............. ।।୦।।

ତୁମ ରୂପ ଦରଶନ ନିତି କରୁ ଏ ନୟନ (୨ଥର)
ସେ ସୁନ୍ଦର ରୂପ ଦେଖି ନତ ହେଉଥିବ ମଥା
ପ୍ରିୟ ପରାଣ.............. ।।୧।।

ଜିଭକୁ ନ ରୁଚେ ମୋର ଆନ ସଂଗୀତର ସୁର (୨ଥର)
ନୀତି ରଚୁଥିବି ତୁମ ଭଜନ କୀରତି ଗାଥା
ପ୍ରିୟ ପରାଣ.............. ।।୨।।

ହୃଦୟ ମନ୍ଦିରେ ମୋର ସଦା ବିରାଜ ଠାକୁର (୨ଥର
କୃପା ରହିଥାଉ ପ୍ରଭୁ ଏହି ଅଳି ବିଶ୍ୱପିତା
ପ୍ରିୟ ପରାଣ............ ।।୩।।

# ବନ୍ଦେ ପୁରୁଷୋତ୍ତମମ୍ ଜୟଲକ୍ଷ୍ମୀକାନ୍ତଂ

ବନ୍ଦେ ପୁରୁଷୋତ୍ତମମ୍ (୪ଥର)
ଜୟଲକ୍ଷ୍ମୀକାନ୍ତମ୍ କମଳ ନୟନଂ
ଶ୍ରୀ ଅନୁକୂଳମ୍ ଶତତଂ ନମାମୀ (୩ଥର)
ବନ୍ଦେ............... ||୦||

ସଂସାର ସାରଂ ନିଗମ ପ୍ରଚାରଂ
ଧର୍ମାବତାରଂ ହୃତ ଭୂମି ଭାରଂ
ବିଶ୍ୱ ପ୍ରଣାମଂ କୃତ ଭକ୍ତ କାମଂ
ଶ୍ରୀ ଅନୁକୂଳମ୍ ଶତତଂ ନମାମୀ (୩ଥର)
ବନ୍ଦେ............... ||୧||

କର୍ପୂର ଗୌରଂ କରୁଣା ବତାରଂ ସଂସାର ସାରଂ ଭୁଜଗେନ୍ଦ୍ର ହାରଂ
ସଦା ବସନ୍ତଂ ହୃଦୟାର ବିନ୍ଦେ
ଭବଂ ଭବାନୀ ସହିତଂ ନମାନୀ (୩ଥର)
ବନ୍ଦେ................ ||୨||

ବ୍ରଜେ ପ୍ରସିଦ୍ଧଂ ନବନୀତ ଗୌରଂ
ବ୍ରଜଙ୍ଗନାନଂ ଦୁକୁଳଂଚ ଚୌରଂ
ଅନେକ ଜନ୍ମାର୍ଜିତ ପାପ ଚୌରଂ
ଚୌରାମ୍ଂୟ ଗଣ୍ୟଂ ପୁରୁଷମ୍ ନମାମୀ (୩ତର)
ବନ୍ଦେ............... ||୩||



# ଭକତି ପ୍ରଦୀପ ଜାଳିଦିଅ ପ୍ରଭୁ

ଭକତି ପ୍ରଦୀପ ଜାଳିଦିଅ ପ୍ରଭୁ
ହୃଦୟ ମନ୍ଦରେ ମୋର (॥)
କୋଟି ଜନମର ଅଜ୍ଞାନ ତିମିର (୨ଥର)
ଏ ଜନମେ ହେଉ ଦୂର..
ହୃଦୟ ମନ୍ଦିରେ ମୋର...
ଭକତି.................. ||୦||

ଜୀବନ ମୋହର ବିତିଯାଉ ପ୍ରଭୁ
ତୁମ ଅରଚନା ପାଇଁ
ଜୀବନରେ ଯେତେ କଳୁଷ କାଳିମା
ଆଖି ନୀରେ ଦେବି ଧୋଇ (॥)
ଏତିକି ମିନତୀ ତୁମ ଶ୍ରୀଚରଣେ...
ଜଣାଉଛି ନିରନ୍ତର...
ହୃଦୟ ମନ୍ଦିରେ ମୋର....
ଭକତି.................. ||୧||

ତୁମବିନା ମୋର ନାହିଁ ଆନଗତି
କର ମୋତେ ପରିତ୍ରାଣ
ତୁମ ନ ରଖିଲେ ଜୀବନ ମୋହର
ଯିବ ନିଷ୍ଟେ ଅକାରଣ (॥)
ତୁମ ନାମ ଧରି ହେଲେ ଯିବି ତରି
ଏ ସଂସାର ପାରାବାର...
ହୃଦୟ ମନ୍ଦିରେ ମୋର
ଭକତି................ ||୨||

# ଭବ ସଂସାରରେ ସାର

ଭବ ସଂସାରେ ସାର ତବ ଶ୍ରୀଚରଣ (୨ଥର)
ଦୁର୍ଲ୍ଲଭ ସତନାମ ସତସଙ୍ଗ ଶରଣ (୨ଥର)
ଭବ ସଂସାରେ............. ॥୦॥

ଅଧରେ ସ୍ମିତ ହାସ୍ୟ ନିତ୍ୟ ନୂତନ
ଆଜାନୁ ଲମ୍ବିତ ବାହୁ ସୋମ୍ୟ ବଦନ (॥)
ହେ ପ୍ରାଣାରାମ...
ହେ ପ୍ରାଣାରାମ ହେ ପ୍ରିୟ ପରମ
ପୁରୁଷୋତ୍ତମ ତବ ଧରାବତରଣ
ଭବ ସଂସାରେ............ ॥୧॥

ପ୍ରବୃତ୍ତି ଅଭିଭୂତ ଭୀତ ମାନସ
ଅଶାନ୍ତ ଦାବାନଳେ ଶୁଷ୍କ ନିରସ (॥)
ହେ ପରମେଶ...
ହେ ପରମେଶ ପରମ ପୁରୁଷ
ନାମରସ ପିୟୁଷେ ପୁଲକିତ ପ୍ରାଣ
ଭବ ସଂସାରେ.......... ॥୨॥

ନୟନେ ନୀରଧାରା ତବ ଗୁଣ ଗାନେ
ଦିବ୍ୟ ଆନନ୍ଦ ପ୍ରଭୂ ମନ୍ତ୍ର ସାଧନେ (॥)
ହେ ଭାବାତୀତ...
ହେ ଭାବାତୀତ ତ୍ରିଗୁଣ ରହିତ
କୋଟି ପ୍ରଣାମ ପଦେ, ନର ନାରାୟଣ
ଭବ ସଂସାରେ.......... ॥୩॥



# ଭଜ ଭାଇ, ଜପ ଭାଇ, ଲକ୍ଷ୍ମୀମାଆ

ଭଜଭାଇ ଜପଭାଇ, ଲକ୍ଷ୍ମୀ ମାଆ ମହାମାୟୀ (୨ଥର)
ସବୁ ସୁଖ ପାଇବୁରେ, ସବୁ ସୁଖ ପାଇବୁରେ, ପାଇବୁରେ
ସବୁ ସୁଖ ପାଇବୁରେ ତାର ନାଆଁଟାକୁ ଗାଇ ଗାଇ
ମହାମାୟୀ ଗୋ
ଭଜ ଭାଇ............. ॥୦॥

ମାଆ ମୋର ଜଗତ ଜନନୀ... ଅଖିଳ ଭବ ଧାରିନୀ
ସରବ ଦୁଃଖ ନାଶିନୀ... ଅଭୟ ବର ଦାୟିନୀ (॥)
ଜୀବନ ଧାୟନ୍ ହୋଇଯିବ, ଜୀବନ ଧାୟାନ୍ ହୋଇଯିବ ହୋଇଯିବ
ଜୀବନ୍ ଧାୟାନ୍ ହୋଇଯିବା ତାର ନାଆଁଟାକୁ ଗାଇ ଗାଇ
ମହାମାୟୀ ଗୋ
ଭଜ ଭାଇ............ ॥୧॥

ମାଆ ମୋର ସରବ ସହନୀ... ସକଳ ସୁଖ ଦାୟିନୀ
ଅଖିଳ ବିଶ୍ୱ ପାଳିନୀ..... ନିଖିଳ ବିଶ୍ୱ କଲ୍ୟାନୀ (॥)
ସ୍ୱର୍ଗ ସୁଖ ପାଇବୁରେ, ସ୍ୱର୍ଗ ସୁଖ ପାଇବୁରେ, ପାଇବୁରେ
ସ୍ୱର୍ଗ ସୁଖ ପାଇବୁରେ ତାର ନାଆଁଟାକୁ ଗାଇ ଗାଇ
ମହାମାୟୀ ଗୋ
ଭଜ ଭାଇ........ ॥୨॥

ସିଏତ ଲକ୍ଷ୍ମୀ ରୂପିଣୀ... କମଳା ନାରାୟନୀ
ଶାରଳା ଉମା ଭବାନୀ.... ଭବସାଗର ତାରିନୀ (॥)
ଗତି ମୁକ୍ତି ପାଇବୁରେ ତାର ନାଆଟାକୁ ଗାଇ ଗାଇ
ମହାମାୟୀ ଗୋ
ଭଜ ଭାଇ............... ॥୩॥

# ମନ ବନ୍ଧୁରେ

ମନ ବନ୍ଧୁରେ.... ଓ... ଓ ବନ୍ଧୁ
ମନ ବନ୍ଧୁରେ, ମୋ ବନ୍ଧୁ, ମନ ବନ୍ଧୁରେ
କା ଆଗେ କହିବି, ବନ୍ଧୁ ଗୋପନ କଥା
ମୋ ବନ୍ଧୁ ଗୋପନ କଥା
ବନ୍ଧୁରେ... ଓ.. ମାୟାଘେରା ଜୀବନର ଗହନ ବ୍ୟାଥା
ମୋ ବନ୍ଧୁ ଗୋପନ କଥା...... ||୦||

ଜନମ ମୃତ୍ୟୁ ଚକ୍ରରେ (ଘୁରୁଛି ଅଚେତନରେ (୨ଥର)
ଅନେକ ଜନ୍ମ ସାଧନ, ସବୁ ହେଲା ବିସ୍ମରଣ (୨ଥର)
ତଥାପି ବିଭୁପୟରେ (୨ଥର) ନଲାଗେ ମଥା
ମୋ ବନ୍ଧୁ ଗୋପନ କଥା........... ||୨||

କାମ କ୍ରୋଧ ଦମ୍ଭ ଲୋଭ (ଷଡରିପୁ ପରାଭବ) (୨ଥର)
କାମିନୀ କାଞ୍ଚନେ ବସ, ନାମ ଯଶେ କରିଆସ (୨ଥର)
ମାନବ ଜନମ ସିନା (୨ଥର) ହୋଇଲା ବୃଥା
ମୋ ବନ୍ଧୁ ଗୋପନ କଥା.......... ||୨||

ବୃତ୍ତିର ଜାଲରେ ପଡ଼ି (ସନାତନ ପଥ ଛାଡ଼ି) (୨ଥର)
ତ୍ରିତାପ ଜ୍ୱାଳା ଯନ୍ତ୍ରଣା, ବେଦନା ଅନୁଶୋଚନା (୨ଥର)
କାଳର ମୁହଁରେ ଶେଷେ (୨ଥର) ଜୀବନ ବୃଥା
ମୋ ବନ୍ଧୁ ଗୋପନ କଥା......... ||୩||

ଲଭିଛି ଇଷ୍ଟଚରଣ (ସତସଙ୍ଗ ସତନାମ) (୨ଥର)
ତାଙ୍କରି ସେବା ପ୍ରୟାସ, ସତତ କର ମାନସ (୨ଥର)
ପ୍ରେମାନନ୍ଦେ ଗାଅ ମନ (୨ଥର) ପ୍ରଭୁର ଗାଥା
ମୋ ବନ୍ଧୁ ଗୋପନ କଥା...... ||୪||



# ମୋ ମନର ତୁମେ ଗନ୍ଧ କସ୍ତୁରୀ

ମୋ ମନର ତୁମେ ଗନ୍ଧ କସ୍ତୁରୀ
ନୟନର ଦୀପ୍ତିଶିଖା
ଯଶ ଗମରବେ, ମାନ ଅପମାନେ (୨ଥର)
ତୁମେ ମୋ ବିଜୟ ଟୀକା...
ମୋ ମନର.................... ||୦||

ଚେତନାରେ ତୁମେ ଚିଦାନନ୍ଦ ରୂପ
ଜୀବନେ ଅମୃତ ଆଶା
ଉଷାର ପରାଣେ ଅମୀୟ ସିଞ୍ଚନ
ଧ୍ୱାନ୍ତ ନିଶାନ୍ତର ଉଷା...
ଅୟୁତ ଭୁବନ ରାଜରାଜେଶ୍ୱର (୨ଥର)
ମାଗେ ପଦରଜ ଭିକ୍ଷା...
ମୋ ମନର................. ||୧||

ମରଣ ମରୁରେ ପ୍ରିତୀ ମନ୍ଦାକିନୀ
ମରମର ମନସିଜ
ହେ ପ୍ରିୟ ବରେଣ୍ୟ ତାପସ ପ୍ରଣମ୍ୟ
ଦେବଗଣ ଶୀରଧ୍ୱଜ (||)
ସୃଜନ ପାଳନ, ନିଖିଳ ଜୀବନ (୨ଥର)
ମୁକତିର ହୋମଶିଖା...
ମୋ ମନର.............. ||୨||

ଅଶାନ୍ତ ବଳୟେ ତୁମେ କାନ୍ତଦ୍ୟୁତି
ଭକ୍ତ ମାନସ ଆଶ୍ରୟ
ନିଶୁଦ୍ଧ ପ୍ରାଣରେ ଅନ୍ତର୍ଯ୍ୟାମୀ ତୁମେ
ସନ୍ତାପେ ଗନ୍ଧମଳୟ (||)
ପରମ ଦରଦୀ ହେ ଜୀବନଶିଳ୍ପୀ (୨ଥର)
ବିଧିର ଜୀବନ ରେଖା...
ମୋ ମନର........... ||୩||

# ମହାମିଳନର ତୀର୍ଥ ତୁମେ ଗୋ

ମହାମିଳନର ତୀର୍ଥ ତୁମେ ଗୋ
ଅମୃତମୟ ଧାରା (।।)
ତୁମରି ସୋହାଗେ.... (୨ଥର) ଶିକ୍ତ ଧରଣୀ (।।)
ମମତାରେ ମଧୁଝରା
ଅମୃତମୟ ଧାରା...
ମହାମିଳନର.......... ।।୦।।

ଅସୀମ ପରେ କ୍ଷଣିକେ ସୁଝିଛ
ମହାମିଳନର ବେଦି
ସତ ବୁକୁଜ୍ୱଳା ବିରହ ଯାତନା
ନିଭାଇଛ ବୁକେ ବାନ୍ଧି (।।)
ଦିଗହରା ମୁଁ ଯେ (୨ଥର) ଭ୍ରାନ୍ତ ପଥିକ (।।)
ତୁମେ ମୋର ଧ୍ରୁବତାରା
ଅମୃତମୟ ଧାରା...
ମହାମିଳନ...... ।।୧।।

ପ୍ରଳୟ ବୁକୁରେ ସାନ୍ତ୍ୱନା ତୁମେ
ଝଞ୍ଜାରେ କୁହୁ ସ୍ୱନ
ବୈଶାଖି ଝଡ଼େ ଶାନ୍ତ ପରଶେ
ମୁଗ୍ଧ କରିଛ ପ୍ରାଣ (।।)
ହେ ସଚ୍ଚିଦାନନ୍ଦ... (୨ଥର) ପରମଆନନ୍ଦ (।।)
ଦେଇଛ ଜୀବନ ସାରା
ଅମୃତମୟ ଧାରା...
ମହାମିଳନର..... ।।୨।।



# ମନର ମଣିଷ ବୋଲି

ମନର ମଣିଷ ବୋଲି ତୁମକୁ କଲି ଆଶରା (୨ଥର)
ହୃଦୟର ଦୁଃଖ ବୁଝ ମୋ ହୃଦ ଈଶ୍ୱର ପରା (।।)
ମନର ମଣିଷ ....... ।।୦।।

ବିଶ୍ୱସାଇଁ ତୁମ ପାଇଁ ତୁହାଇ କାନ୍ଦୁଛି ଏତେ
ଅବୁଝା ମୋ ମନ କଥା ମରମର ବ୍ୟଥା ଯେତେ (।।)
ପୋଛିଦେଇ ସରାଗରେ ନିତ୍ୟଛାଏଁ ଦେଲଧରା (୨ଥର)
ହୃଦୟର ଦୁଃଖ....
ମନର ମଣିଷ.......... ।।୧।।

ଆଲୋକ ଆଖୋଜା ଏହି ଜୀବନକୁ ଖୋଜିନେଲ
କଳଙ୍କ କାଳିମା ଧୋଇ ମୁଗ୍ଧ ମଞ୍ଜୁଳ କଲ
ହଜାଅ ଜୀବନ ବ୍ୟଥା ତୁମେ ବ୍ୟଥାହାରୀ ପରା (୨ଥର)
ହୃଦୟର ଦୁଃଖ...
ମନର ମଣିଷ...... ।।୨।।

ମହିମାର ମେରୁ ତୁମେ ଭକ୍ତ ବାଞ୍ଛା କଳ୍ପତରୁ
ଯୁଗ ପୁରୁଷୋତ୍ତମ ପୂର୍ଣ୍ଣବ୍ରହ୍ମ ସଦଗୁରୁ (।।)
ମୋ ଜୀବନ ପ୍ରତିକୂଳେ ତୁମେ ଅନୁକୂଳ ପରା (୨ଥର)
ହୃଦୟର ଦୁଃଖ...
ମନର ମଣିଷ...... ।।୩।।

ତୃପତିର ଧାରା ତୁମେ ଢାଳିଲ ଅଶାନ୍ତ ପ୍ରାଣେ
ତପମୂର୍ତ୍ତି ଲୀଳାକଲ ଅଖିଳ ବିଶ୍ୱଭୁବନେ (।।)
ପ୍ରେମମୟ ଅନୁପମ ତୁମେ ମୁକତି ପସରା (୨ଥର)
ହୃଦୟର ଦୁଃଖ.....
ମନର ମଣିଷ............. ।।୪।।

# ମନରେ.... ଇଚ୍ଛାମୟ ସେହି ଏକାରେ

ମନରେ... ଇଚ୍ଛାମୟ ସେହି ଏକାରେ
ଇଚ୍ଛାମୟ ସେହି ଏକାରେ (୨ଥର)
କୋଟି ବିଶ୍ୱ ପୁଣ୍ୟ ଯା ଇଚ୍ଛାରେ ଜାଣ (୨ଥର)
ପଲକେ ଦେଇଛି ଦେଖାରେ (୨ଥର)
ଇଚ୍ଛାମୟ............... ॥୦॥

ଜ୍ୟୋତିର୍ମୟ ଧାମ ଅଟେ ତା'ର ବାସ
ମର ଦେହେ ତୋର ହୋଇଛି ପ୍ରକାଶ (॥)
ପ୍ରେମମୟ ସେହି ମୋହଗ୍ରସ୍ଥ ହୋଇ
ବନ୍ଧନୁ କରେ ସେ ରକ୍ଷାରେ
ଇଚ୍ଛାମୟ......... ॥୧॥

ଭାବୁ ତାକୁ ତୁହି ଦୂରେ
ଗୋପତ ଭାବରେ ଅଛି ତୋ ଅନ୍ତରେ (॥)
ଅରୂପ ଅନନ୍ତ ମହିମା ବିଚିତ୍ର (୨ଥର)
ସେ ପରା ପରମ ସଖାରେ
ଇଚ୍ଛାମୟ..................... ॥୨॥



# ମୋ ଠାକୁର ଜୀବନ୍ନାଥ

ମୋ ଠାକୁର ଜୀବନ୍ନାଥ ଜୀବନର ନାଥ
ଅନୁକୂଳ ନାମେ ଆଜି ଜଗତେ ବିଦିତ
ମୋ ଠାକୁର...॥୦॥

ଜୀବନେ ସଞ୍ଚିତ ସମ୍ପଦ ଯେତେ
ତବ ଶ୍ରୀପଦେ ମୁଁ ସମର୍ପି ଦେଇ
ତବ ମହାଦାନେ ପାଇଅଛି ସବୁ
ଦୁର୍ଦ୍ଦିନ ଯାତନା ଯାଇଛି ମୁଁ ଭୁଲି
ଜ୍ଞାନ ଚକ୍ଷୁଦାତା ଜଗତ କରତା
ପ୍ରେମମୟ ତୁମେ ଗଛିମୁକ୍ତି ଦାତା
ଏ ବିଶ୍ୱର ବିଶ୍ୱେଶ୍ୱର ମୋ ସକଳ ତୀର୍ଥ
ମୋ ଠାକୁର.... ॥୧॥

ମନ ଆକାଶ ତୁଟେ ଯେବେ ଆଶା
ସାହାବଳୀ ହୋଇ ଦେଇଛ ଭରସା
ଉଦ୍ଧାରୁ ପରାଣେ ଅମିୟ ସିଞ୍ଚନ
ଧ୍ୱାନ୍ତ ନିଶାନ୍ତର
ତୁମେ ଦିବ୍ୟ ଉଷା
ଛରା ଫୁଲ ପରି ଜୀବନ କୁସୁମ
ଫୁଟାଇଛ ତୁମେ ହେ ପ୍ରିୟ ପରମ
ପୁଷ୍ପମୟ କରିଦେଲ ମୋ କଣ୍ଟକ ପଥ
ମୋ ଠାକୁର... ॥୨॥

## ମଥା ମୋର ଲୋଟିଯାଉ

ମଥା ମୋର ଲୋଟି ଯାଉ ଚରଣ ଧୂଳିରେ (୨ଥର)
ଅହଙ୍କାର ଧୋଇ ଯାଉ ନୟନର ନୀରେ
ପ୍ରଭୁ...... ଚରଣ ଧୂଳିରେ
ମଥା ମୋର........... ||୦||

ଆଜିଯାଏ କରିଛି ଯା ସ୍ୱାର୍ଥପୂର୍ଣ୍ଣ କର୍ମ
ମଜ୍ଜିଲି ଆପଣା ସୁଖେ ଭୁଲିଲି ଧରମ (||)
ନିଜ ସୁଖେ ମଜ୍ଜିଗଲି (୨ଥର) ବିଷୟାବିଷରେ
ନ ଚିହ୍ନିଲି ମୋ ଅନ୍ତର ଅମୀୟ ରସରେ (୨ଥର)
ମଥା ମୋର.............. ||୧||

ଦୟାକର ଦରଦୀ ହେ ପ୍ରାଣର ଠାକୁର
ନାମମୟ ହେଉ ସତ୍ତା ମାଗୁଣି ମୋହର (||)
ତୁମେ ଇଚ୍ଛା ପୂର୍ଣ୍ଣକର (୨ଥର) ନିଷ୍କାମକର୍ମରେ
ଚିତ୍ତ ମୋର ରତ ରହୁ ତୁମରି ମର୍ମରେ (୨ଥର)
ମଥା ମୋର ................. ||୨||

ଭିକ୍ଷା ଦିଅ ଦୀକ୍ଷଦାତା ଭରିଦିଅ ଶାନ୍ତି
ଜୀବାନ ମୁଁ ଦେଖୁଥାଲ ତୁମ ଦିବ୍ୟକାନ୍ତି (||)
ତୁମେ ପ୍ରଭୁ ପୁଷ୍ପମଧୁ (୨ଥର) ମୋ ଜୀବ କମଳେ
ପ୍ଲୁତ କର ପ୍ରାଣ ମୋର ଲୋତକ ଅନଳେ (୨ଥର)
ମଥା ମୋର............ ||୩||



## ମଧୁମୟ ତୁମେ ପ୍ରାଣମୟ ତୁମେ

ମଧୁମୟ ତୁମେ ପ୍ରାଣମୟ ତୁମେ
ପ୍ରେମମୟ ତୁମେ ହେ ଠାକୁର
ମଧୁର କଲ ଏ ସଂସାର
ମଧୁମୟ................||୦||

ପ୍ରାଣର ପ୍ରାଣ ହେ ପ୍ରାଣମୟ ହରି
ମଉଡ ମଣି ହେ ପ୍ରାଣ ଦେଲ ଭରି
ପ୍ରାଣ ଆକୁଳେ ଡାକେ ଅନାଇଲ
ଆଜି ଏଇ ଧରାତଳ
ମଧୁମୟ...............||୧||

ପ୍ରେମମୟ ତୁମେ ପ୍ରେମବାରି ଧାରା
କେତେ ଶୁଷ୍କ ତରୁ ମଞ୍ଜୁରିତ କଲା
ବ୍ୟକ୍ତି ସମ୍ପତ୍ତି ଗୃହ ସମାଜରେ
ପ୍ରୀତିର ପରଶ ଦେଲ
ମଧୁମୟ..............||୨||

ମଙ୍ଗଳମୟ କରୁଣା ନିଧାନ
କୃପା କରି ଦେଲ ଜୀବନ ବିଧାନ
ନୟନ ହୀନରେ ରାହା ଦେଖାଇଲ
ପାପି ତାପି ଉଦ୍ଧାରିଲ
ମଧୁମୟ...........||୩||

# ଶ୍ରୀଗୁରୁ ଚରଣ ତଳେ

ଶ୍ରୀଗୁରୁ ଚରଣ ତଳେ( ୨ଥର)
ଭାବର ଆବେଶେ ଆଳପନା ରଚେ( ୨ଥର)
ଭକତି ଚନ୍ଦନ ଜଳେ
ଶ୍ରୀଗୁରୁ............||୦||

ପିଆସି ଚାତକ ପରାଏ ପକ୍ଷୀକ
ଆତୁର ପରାଣ ତୋଳି
ବିଶ୍ୱାସର ନେତ୍ର କରି ଉନ୍ମିଳିତ
ଭକ୍ତି ସୁଧା ପାନ କରି
ସେ ଚରଣ ପ୍ରାନ୍ତେ ଦେଖ ଅବିରତେ
ଆନନ୍ଦ ଲହରୀ ଖେଳେ
ଶ୍ରୀଗୁରୁ............||୧||

ଅଲୋକ୍ତ ବରଣ ପଙ୍କଜ ଚରଣ
ଲୁବ୍ଧ ଏ ମନ ଭ୍ରମରା
ସେ ପଦ୍ମକେଶର ମଧୁ ଜରାଜର
ନାଶ କରେ ଭବ ମନ୍ଦିରା
କୃପା ରେଣୁ ବୋଳା ପରାଣ ଉଛୁଳା ( ୨ଥର)
କ୍ଷମାଶ୍ରୟ ଭୁମଣ୍ଡଳେ
ଶ୍ରୀଗୁରୁ............||୨||

ଅମୀୟ ସୀତାଂଶୁ ଅନିର୍ବାଣ ଅଂଶୁ
ଅଜ୍ଞାନ ତମସା ହାରୀ
ସଦା ଜ୍ୋତିର୍ମୟ ରୂପେ ରୂପମୟ
ମହାପ୍ରେମ ଅବତାରୀ
ରେ ପ୍ରମତ୍ତ ମନ ଗୁରୁ ପଦେ ଧ୍ୟାନ ( ୨ଥର)
କର ନିତି ନିରନ୍ତର
ଶ୍ରୀଗୁରୁ.............||୩||



# ଶଙ୍ଖ ବାଜିଲାରେ ପ୍ରାଣ ନାଚିଲା

ଶଙ୍ଖ ବାଜିଲାରେ ପ୍ରାଣ ନାଚିଲା
ଭେରୀ ଶବଦ ମରମ ଛୁଇଁଲାରେ
ହୁଳାହୁଳି ଧ୍ୱନି ଭକ୍ତମନ ଜିଣି ଆନନ୍ଦ ଉଲ୍ଲାସେ ମଜିଲାରେ(||)
ଶଙ୍ଖ ବାଜିଲାରେ...||୦||

ଜଗତ ପାଇଁକି ପ୍ରେମମୟ ରୂପେ
(ଦେଖ) ବହିଛନ୍ତି ବିଶ୍ୱପିତା( ୨ଥର)
ସେ ନେତ୍ର କମଳ କରୁଣା ସଜଳ
ଚିର ବରାଭୟ ଦାତା(||)
ସେ ରଙ୍ଗା ଚରଣେ ନିଅ ହେ ଶରଣ( ୨ଥର)
ଅନନ୍ତ ସେ ବିଭୁଲୀଳାରେ( ୨ଥର)
ଶଙ୍ଖ ବାଜିଲାରେ...||୧||

ଚଉଦିଗେ ବହେ ଆନନ୍ଦ ଲହରୀ
(ଆହା) ଭୁବନ ଶୋକ ପାସୋରା( ୨ଥର)
ନାମ ପ୍ରେମେ ରସି ନିତି ଦିବାନିଶି
ଭକତି ଭାବରେ ଭୋଳା(||)
ସେ ପ୍ରେମ ପରଶେ ମୂହୁର୍ତ୍ତେ ନିମିଷେ( ୨ଥର)
ବିଗଳିତ ରୁକ୍ଷ ଶିଳାରେ( ୨ଥର)
ଶଙ୍ଖ ବାଜିଲାରେ...||୨||

# ସବୁର ଚରମ ତୁମେ

ସବୁର ଚରମ ତୁମେ
କି କରିବି ତୁମ ମହିମା କୀର୍ତ୍ତନ( ୨ଥର)
ସବୁର ଚରମ ତୁମେ
ଦେବାକୁ ଉପମା ତୁମ ସାଥେ ପ୍ରଭୁ, ନାହିଁ କିଛି ଧରାଧାମେ
ସବୁର ଚରମ ତୁମେ...||୦||

ତୁମ ଗୌର କାନ୍ତି ତୁମ ରୂପ ଠାଣି
କେତେ ଯେ ପରାଣ ପାରିଥିଲା କିଣି
ଚା..ହିଁ ତବ ଗାତ୍ର କର୍ଣ୍ଣ ନାସା ନେତ୍ର( ୨ଥର)
ନାଚିଥିଲେ ଭକ୍ତ ପ୍ରେମେ
ସବୁର ଚରମ ତୁମେ...||୧||

କେତେ ପାପି କେତେ ଖୁନୀ ଅପରାଧୀ
ନେଇଛ କୋଳକୁ କହିଛ ପ୍ରବୋଧି
ତୁମ ଦୟା କ୍ଷମା, ନାହିଁତ ଉପମା( ୨ଥର)
ଜୟଗାନ ତୁମ ନାମେ
ସବୁର ଚରମ ତୁମେ...||୨||

ରଚିଥିଲ ଯେବେ ହସର ଜୁଆର
ସେ ହସେ ହୋଇଲା ଜଗତ ବିଭୋର
ମନର ପରାଶ, ହୋଇଥିଲା ନାଶ ( ୨ଥର)
ଭରିଲ ଶାନ୍ତି ମରମେ
ସବୁର ଚରମ ତୁମେ...||୩||
କାନ୍ଦିଲ ବୁହାଇ ଚକ୍ଷୁ ଅଶ୍ରୁଧାର
ସେ କାନ୍ଦେ ଝଡିଲା ଗଛରୁ ପତର
ତୁମ ହସ କାନ୍ଦ, ବିଚିତ୍ର ସେ ଫାନ୍ଦ( ୨ଥର)
ତୁମରି ଉପମା ତୁମେ
ସବୁର ଚରମ ତୁମେ...||୪||



# ସକଳ ଲିଭିଛି ପ୍ରଭୁ ତୁମକୁ ପାଇ

ସକଳ ଲିଭିଛି ପ୍ରଭୁ ତୁମକୁ ପାଇ
ଭୁଲିଛି ଦୁଃଖ କଷଣ ତୁମକୁ ଚାହିଁ (||)
ସକଳ ..||୦||

ନୟନ ଖୋଲିଲେ ତୁମେ ନୟନ ବୁଜିଲେ ତୁମେ
ଦୁଃଖ ବେଦନାରେ ତୁମେ ସୁଖ ସପନରେ ତୁମେ(||)
ତୁମ ଛଙ୍ଗା ଧରା ଧାମେ ପ୍ରିୟ ମୋ ନାହିଁ( ୨ଥର)
ସକଳ... ||୧||

ନ ଦେଖି ନାବେ ନାଉରୀ ବସିଥିଲି ମନମାରି
ଆସିଲ ବେଦନା ହାରି ଘାଟେ ଲଗାଇଲ ତରୀ(||)
ଦେଖି ସେ କଳା ଭଉଁରୀ ଭୟ ମୋ ନାହିଁ( ୨ଥର)
ସକଳ... ||୨||

ଭୁଲାଇ ଭବ ଜଞ୍ଜାଳ ମନ ପ୍ରାଣେ ଦେଇ ବଳ
ସିଞ୍ଚିଲି ଶାନ୍ତିର ବାରି ମିଟାଇ ଦୁଃଖ ଅନଳ(||)
ତବ ଚରଣ କମଳ ସବୁ ମୋ ପାଇଁ( ୨ଥର)
ସକଳ... ||୩||

# ସ୍ୱର୍ଗ ଯାହାର ସିଂହାସନ

ସ୍ୱର୍ଗ ଯାହାର ସିଂହାସନ
ପୃଥିବୀ ଯାହାର ପଦ ପୀଠ
ମୁଁ ସେହି ପ୍ରଭୁଙ୍କ ପଦ ତଳେ ଭକତି ଅଞ୍ଜଳି ଢାଳେ
ସ୍ୱର୍ଗ ଯାହାର... ॥୦॥

ଯେ ନାମରେ ଅନ୍ଧ ଦେଖିଥିଲା
ଯେ ନାମରେ ଛୋଟା ଚାଲିଥିଲା(॥)
ସେହିତ ମୋହର ଜୀବନ ସଂଗୀତ( ୨ଥର)
ଯେ ନାମେ ମୁଁ ଶାନ୍ତି ପାଏ( ୨ଥର)
ସ୍ୱର୍ଗ ଯାହାର... ॥୧॥

ଯେ ନାମକୁ ମୃତ୍ୟୁ ଡରିଥିଲା
ପାପ ଅମାନିସା ବହିଗଲା(॥)
ପାଇଛି ସେ ନାମ ଦେଇ ମୋ ଜୀବନ( ୨ଥର)
ତାଙ୍କରି ଚରଣ ତଳେ( ୨ଥର)
ସ୍ୱର୍ଗ ଯାହାର... ॥୨॥



# ସାଧନାର ପଥେ ଚ୍ଛଲରେ ସାଧକ

ସାଧନାର ପଥେ ଚ୍ଛଲରେ ସାଧକ
ସାଧନର ପଥେ ଚ୍ଛଲ
ଯେତେ କଷ୍ଟ ଆସୁ ଜୀବନେ ତୋହରୋ( ୨ଥର)
ସେସବୁ ଆଡେଇ ଚାଲ ( ୨ଥର)
ସାଧନରେ............॥୦॥

ଗୁରୁଙ୍କ ବାକ୍ୟକୁ ମନ୍ତର କର
ଅନ୍ତକରଣରେ ତାଙ୍କୁ ସୁମର
ଜୀବନ ସଂଗ୍ରାମେ ସଂଘର୍ଷ କର
ତିଳକ ହୋଇବ ତୋ ବିଜୟର
ସାଧନରେ............॥୧॥

ଝଡ ଝଞ୍ଜା ଯଦି ଆସେ ଜୀବନେ
ଆନନ୍ଦିତ ହୁଅ ତା ଦେଖି ମନେ
ଲକ୍ଷ ପଥେ ସଦା ଥିବୁ ଆଗେଇ
ବାଧା ବିପତ୍ତିକୁ ଆଡ଼େଇ ଦେଇ
ସାଧନରେ............॥୨॥

ଯେ ଯାଏଁ ନ ମିଳେ ପ୍ରଭୁ ମନ୍ଦିର
ସାଧକେ ଥକି ନ ଯାଅ ଏଥର
ଶେଷରେ ହୋଇବ ପ୍ରଭୁ ମିଳନ
ସାଗରେ ସରୀତା ଯେପରି ଲୀନ
ସାଧନାର................॥୩॥

# ସ୍ୱାଗତମ୍ ମା ସ୍ୱାଗତମ୍

ସ୍ୱାଗତମ୍ ମା ସ୍ୱାଗତମ୍( ୨ଥର)
ସୃଷ୍ଟିପାଳୀ ଜନନୀ ମାଗୋ ଘେନ ପ୍ରଣାମମ୍
ସ୍ୱାଗତମ୍...........॥୦॥

ତବ କରୁଣାର ରେଣୁରେ
ଆମେ ଜନମି ଏ ଧାରା ବୁକୁରେ(॥)
ମାଗୋ କରୁଣାମୟୀ, ତୁମ ତୁଳନା ନାହିଁ( ୨ଥର)
ଦିଅ ପଦେ ସ୍ଥାନ ଜନ୍ମ ଜନମ୍
ସ୍ୱାଗତମ୍.............॥୧॥

ଲୀଳାମୟ ସଙ୍ଗେ ଅବତରୀ
ଲଇଲା ଦେଇଛ ଜଗତେ ବତରୀ (॥)
ଗାଇ ତୁମରି ଗାଥା, ପଦେ ରଖିଗୋ ମଥା( ୨ଥର)
ଆମେ ଲଭିବୁ ଆନନ୍ଦ ପରମ
ସ୍ୱାଗତମ୍...............॥୨॥

ଯୁଗେ ଯୁଗେ ତୁମେ ଆସ ମା
ଜୀବନର ପଥେ ହୋଇ ସାହା(॥)
କେତେ ଦୁଃଖୀ ଜୀବନ, କରିଛ ତୁମେ ଧନ୍ୟ ( ୨ଥର)
ତୁମ ଚରଣରେ କୋଟି ପ୍ରଣାମ୍
ସ୍ୱାଗତମ୍..............॥୩॥



# ହେ ମାତା

ହେ ମାତା...
ବନ୍ଦନ କରେ ଚରଣେ କରୁଣାମୟୀ ଜଗଦ୍‌ମାତା ( ୨ଥର)
ହେ ଈଶ୍ୱରୀ ତବ କୃପାଦାନେ ( ୨ଥର)
ଗାଇବି ତୁମରି ପୁଣ୍ୟ ଗାଥା
ହେ ମାତା... ॥୦॥

ନୟନ ମୋ ବିରାଜିତ ତବ ଶୁଭ କାନ୍ତି
ପରାଣେ ଲଭିଛି ମାତ ଅମୀୟ ପ୍ରଶାନ୍ତି (॥)
ଆଶିଷ ଦାୟିନୀ ମାଗୋ ( ୨ଥର)
ଲିଭିଛି ଜୀବନୁ ଦୁଃଖ ବ୍ୟଥା
ହେ ମାତା... ॥୧॥

ଦେବକୁଳ ପ୍ରସବିନୀ ନିଖିଳ ଆଶ୍ରୟ
ପୁରୁଷୋତ୍ତମ ବଲ୍ଲଭୀ ସକଳ ସହାୟ (॥)
ଭୁବନ ମୋହିନୀ ମଗୋ ( ୨ଥର)
ତୁମୋ ମୋ ଜୀବନ ତ୍ରାତା
ହେ ମାତା... ॥୨॥

# ହେ ଦୟାମୟ

ହେ ଦୟାମୟ, ବିନତୀ ଏତିକି ( ୨ଥର)
(ପ୍ରଭୁ ହେ) ଦିଅ ତୁମ ଶୁଭାଶିଷ ( ୨ଥର)
ଧନ ମାନ ଯଶ, ଲୋଡ଼ା ନାହିଁ ମୋର ( ୨ଥର)
(ପ୍ରଭୁ ହେ) କର ପ୍ରଭୁ ତୁମ ଦାସ ( ୨ଥର)
ହେ ଦୟାମୟ...॥୦॥

ସଂସାର ମାୟାରେ ଅଥଳ ସାଗରେ ( ୨ଥର)
ଦିଗହରା ମୂଢ଼ ପାନ୍ଥ ( ୨ଥର)
କାଳର କବଳୁ ତୁମେ ସିନା ପ୍ରଭୁ ( ୨ଥର)
ରଖିପାର ଜଗନ୍ନାଥ
(ପ୍ରଭୁ ହେ) କର ପ୍ରଭୁ ତୁମ ଦାସ ( ୨ଥର)
ହେ ଦୟାମୟ...॥୧॥

ଆକୁଳେ ଡାକୁଛି ରଖ ଚକ୍ରଧାରୀ ( ୨ଥର)
ଭାଜିଛି ମୋ ଅହଂକାର ( ୨ଥର)
ସ୍ମରିବି ନିରତ ତବ ନାମ ରୂପ ( ୨ଥର)
ଦୟାମୟ ବିଶ୍ୱମ୍ଭର
(ପ୍ରଭୁ ହେ) କର ପ୍ରଭୁ ତୁମ ଦାସ ( ୨ଥର)
ହେ ଦୟାମୟ... ॥୨॥



# ହେ ପ୍ରାଣର ପ୍ରାଣେଶ୍ୱର

ହେ ପ୍ରାଣ ପ୍ରାଣେଶ୍ୱର ମୋ ପ୍ରାଣ ବାନ୍ଧବ
ତୁମ ବିନା କେହି ନାହିଁ ଜୀବନେ ମୋହର (॥)
ଦରଦୀ ଦୟାଲ୍ ଭକତ ବତ୍ସଳ ( ୨ଥର)
ପ୍ରଣତି ଜଣାଏ ବ୍ରଗୁ ଚରଣେ ତୁମର ( ୨ଥର)
ହେ ପ୍ରାଣର ପ୍ରାଣେଶ୍ୱର ... ॥୦॥

ଅନ୍ତରେ ସ୍ମରିଲେ ତୁମେ ଅନ୍ତର୍ଯ୍ୟାମୀ
ଚିତ୍ତରେ ଚିନ୍ତିଲେ ତୁମେ ଚିନ୍ତାମଣି
ଭାବରେ ଭାବିଲେ ତୁମେ ଭାବଗ୍ରାହୀ
ତୁମରି ଲୀଳାକୁ ବିଝି ହୁଏ ନାହିଁ (॥)
ତୁମେ ଲୀଳାମୟ ପ୍ରଭୁ ଲୀଳାର ସାଗର
ଲୀଳା ଯେ ତୁମରି ଦିଶେ ବଡ଼ ବିଚିତର
ହେ ପ୍ରାଣର ପ୍ରାଣେଶ୍ୱର ... ॥୧॥

ଏ ମାୟା ସଂସାରେ କେ ନୁହେଁ କାହାର
ସବୁ ଯେ ଅଟଇ ସତେ ସାତପର
ତୁମେ ମୋ ନିଜର ଅତି ଆପଣାର
କୋଟି ଜନମର ପ୍ରାଣର ଠାକୁର (॥)
ଜନମ ଦେଇଛ ଯେବେ ମୋତେ ପ୍ରଭୁ
ତୁମରି ସେବାରେ ଲାଉ ଜୀବନ ମୋହର
ହେ ପ୍ରାଣର ପ୍ରାଣେଶ୍ୱର .... ॥୨॥

# ହେ ମୋର ଅନ୍ତରତମ

ହେ ମୋର ଅନ୍ତରତମ (୪ଥର)
ନଶ୍ୱର ଦେହେ ଭାସ୍ୱର ପରଶ (୨ଥର), ଅନୁଭବେ ଅନୁକ୍ଷଣ (୨ଥର)
ହେ ମୋର ଅନ୍ତରତମ (୨ଥର)

ଯେଦିନୁ ଶୁଣିଲି ତୁମ କଥା କାନେ, କଣ୍ଠେ ମୋ ଫୁଟିଲା ଭାଷା
ତୁମ ରୂପ ଦେଖି ଆଖିରେ ଲାଗିଲା, ଦେଖିବା ଅଜଣା ନିଶା- ୨ଥର
ପ୍ରତି ଅଙ୍ଗ ମୋର ଚକିତେ ଚାହିଁଲା (୨ଥର),
କିଏ ତୁମେ ପ୍ରିୟତମ (୨ଥର)
ହେ ମୋର ଅନ୍ତରତମ (୪ଥର)

ବିଜନେ ବୁଡିଛି ଯେତେ ମୁଁ ଅନ୍ତରେ, ପାଇନାହିଁ କିଛି ଅନ୍ତ
ଚିର ଅଧରାହେ ଧରା ଦେଇନାହଁ, ଯେଣୁକି ତୁମେ ଅନନ୍ତ - ୨ଥର
ସବୁ ବୁଝିବାରେ ତଥାପି ରହିଛ (୨ଥର), ଶିଳ୍ପୀ ତୁମେ ବେମାଲୁମ (୨ଥର)
ହେ ମୋର ଅନ୍ତରତମ (୪ଥର)
ହେ ମୋର ଅନ୍ତରତମ (୪ଥର)
ନଶ୍ୱର ଦେହେ ଭାସ୍ୱର ପରଶ (୨ଥର), ଅନୁଭବି ଅନୁକ୍ଷଣ (୨ର)
ହେ ମୋର ଅନ୍ତରତମ (୪ଥର)



# ରାଧେ ରାଧେ ଗୋବିନ୍ଦ

ରାଧେ ରାଧେ ଗୋବିନ୍ଦ, ଭଜିବାଠୁ ଆନନ୍ଦ ନାହିଁରେ ଆଉ
ଭଜିଯା ତୁନାମ, ମଜି ଯା ତୁ ନାମ ୨ଥର
ବେଳ ଥାଉ ଥାଉ

ପାପଭରା ଏ ଜୀବନ, ଜମାରୁ ଅଢେଇ ଦିନ
ଆଜି ଅଛି କାଲି ନାହିଁ, ଶୂନ୍ୟରେ ହେବା ଲିନ (୨ଥର)
ଆନନ୍ଦ ଆନନ୍ଦ ନାହିଁରେ ଆନନ୍ଦ (୨ଥର) ଜଗତେ ଆଉ
ହେ ରାଧେ ରାଧେ ଗୋବିନ୍ଦ, ଭଜିବାଠୁ ଆନନ୍ଦ ନାହିଁରେ ଆଉ

ସେ ନାମେ ଝରେ ଅମୃତ, ଧୋଇଯାଏ ପାପ ତାପ
ପାନ କଲା ଲୋକ ଜାଣେ
ସେଇ ନାମର ତତ୍ତ୍ୱ - ୨
ନଥିଲେ ସେ ନାମେ, ଭାବ ଏ ଜୀବନେ (୨ଥର)
କି ଲାଭ ଆଉ
ରାଧେ ରାଧେ ଗୋବିନ୍ଦ, ଭଜିବା ଆନନ୍ଦ ନାହିଁରେ ଆଉ
ଭଜିଯା ତୁନାମ, ମଜି ଯା ତୁ ନାମ, ବେଳ ଥାଉ, ରାଧେ ରାଧେ

# ଦୟାମୟ ହରି ପ୍ରୀୟ ପରମ

ଦୟାମୟ ହରି ପ୍ରୀୟ ପରମ
ତାଙ୍କରି ଚରଣେ କୋଟି ପ୍ରଣାମ
ଧନ୍ୟ ହେବୁରେ (୨ଥର), ମାନସ
ଜୀବନ ରଥରେ ପାଇଗଲେ ବାରେ ମାନସ
ତାଙ୍କ ନାମ ଧରି ହୋଇଯାରେ ପାରି (୨ଥର)
ପ୍ରେମମୟ ତୋର କରୁଣାଘନ......... (୦)

ହରି ହରି ମନ ଗାଓରେ, ରାଧା ରାଧା ନାମ ଜପରେ
ପ୍ରେମନନ୍ଦେ ହଜି ଯାଓରେ, ନାମ ପ୍ରେମ ରସେ ମଜରେ
ଜୀବନର ତରି ସତନାମ ଧରି (୨ଥର)
ନୟନର ନୀରେ ଭିଜାଅ ପ୍ରାଣ........... (୧)

ନାମ ପ୍ରେମ ଭାରି ମଧୁର, ଆନନ୍ଦ ମିଳଇ ଅପାର
ପ୍ରେମମୟ ସେହି ଠାକୁର, କରିଦେବେ ତୋତେ ଉଦ୍ଧାର
ଜନ୍ମ ଜନ୍ମାନ୍ତର ବହୁ ପ୍ରତୀକ୍ଷାର (୨ଥର)
ପୂର୍ଣ୍ଣ କଲେ ଆଜି ପୁରୁଷୋତ୍ତମ....... (୨)

ଇଷ୍ଟକର୍ମେ ମଜି ଯାଅରେ, ତାଙ୍କରି ଆଶିଷ ଲଭରେ
ସବୁ ଆପତ୍ତି ବିପତ୍ତିରେ, ଇଷ୍ଟକର୍ମ ସାହା ହେବରେ
ଜୀବନର ଡୋରୀ, ତାଙ୍କ ହାତେ ଛାଡ଼ି (୨ଥର)
ଇଷ୍ଟକର୍ମୀ ଧର୍ମ କର ପାଳନ.............. (୩)



# ଶକତି ରୂପିଣୀ ସ୍ୱସ୍ତି ଦାୟିନୀ

ଶକତି ରୂପିଣୀ ସ୍ୱସ୍ତି ଦାୟିନୀ
ପୁରୁଷୋତ୍ତମ ସଙ୍ଗିନୀ ଲକ୍ଷ୍ମୀ ଠାକୁରାଣୀ ମା ଲକ୍ଷ୍ମୀ ଠାକୁରାଣୀ
ହେ ମା ଆ ଆ ଆ ଆ, ହେ ମା (୦)

ସ୍ନେହମୟୀ ଦୟାମୟୀ କରୁଣାର ଧାରା
ଭବଭୟ ବିନାସିନୀ ମା ଗୋ କମଳା
ତୋ ପରଶେ କେତେ ପାପୀ (୨ଥର), ଭବୁ ଗଲେ ତରୀ ମା (୩ଥର)

ଶକତି ରୂପିଣୀ ସାୟିନୀ
ପୁରୁଷୋତ୍ତମ ସଙ୍ଗିନୀ, ଲକ୍ଷ୍ମୀ ଠାକୁରାଣୀ ମା ଲକ୍ଷ୍ମୀ ଠାକୁରାଣୀ
ହେ ମା ଆ ଆ ଆ, ହେ ମା (୧)

ଜଗତ ଜନନୀ ମା, ଆଶିଷ ଦାୟିନୀ
ଦୁଃଖ ବିମୋଚନୀ ମା, ଘେନ ମୋ ଦଇନି
ତୁହି ଶକ୍ତି ତୁହି ସ୍ୱାଧୀ, ବିଷ୍ଣୁ ପାଟରାଣୀ ମା (୩ଥର)

ଶକତି ରୂପିଣୀ ସ୍ୱସ୍ତି ଦାୟିନୀ
ପୁରୁଷଉମ ସଙ୍ଗିନୀ ଲକ୍ଷ୍ମୀ ଠାକୁରାଣୀ ମା ଲକ୍ଷ୍ମୀ ଠାକୁରାଣୀ
ହେ ମା ଆ ଆ ଆ, ହେ ମା (୦)

# ଲାଗିଲା ନବ ପରଶ

ଲାଗିଲା ନବ ପରଶ – ୨
ପ୍ରୀତି ମନେ ପ୍ରାଣେ
ଏ ଧରଣୀ ଧନ୍ୟ ହେଲା ତବ ଆଗମନେ – ୨

ତୁମରି ମୋହନ ରୂପ ଅଭିନବ ଅପରୂପ – ୨
ହରିଲା ଆଖି ପଲକ (୨), ପାରେ ଦରଶନେ

ତୁମ କରୁଣା ଚାହାଣୀ, କୋଟି ମନ ନେଲା କିଣି – ୨
ବନ୍ଧା ରହିଗଲେ କ୍ଷଣେ – ୨
ତୁମ ଶ୍ରୀ ଚରଣେ

ତୁମ ପ୍ରେମ ପାରାବାର, ଧୋଇଦେଲା ଦୁଃଖ ଭାର – ୨
ବହିଲା ଅମୃତ ଗଙ୍ଗା ଏ ବିଶ୍ୱ ଭୁବନେ

ଏଧରଣୀ ଧନ୍ୟ ହେଲା ତବ ଆଗମନେ
ଲାଗିଲା ନବ ପରଶ, ପ୍ରୀତି ମନେ ପ୍ରାଣେ
ଲ ଧରଣୀ ଧନ୍ୟ ହେଲା ତବ ଆଗମନେ



# ଅନାହାତ ନାଦେ

ଅନାହତ ନାଦେ ଘୋଷରେ ମୁରଲୀ, ପ୍ରେମ ସୁଧା ନାମ ରାଧା (୨ଥର)
ଅନାହତ ନାଦେ.............. ନାମ ରାଧା
ରାଧାନାମେ ମୋର ହୃଦ ରତ୍ନ ହାର ତାପ୍ରେମ ଡୋରେ ମୁଁ ବନ୍ଧା
ପ୍ରେମ ସୁଧା ନାମ ରାଧା (୨ଥର)
ଅନାହତ ନାଦେ.... ନାମ ରାଧା
ସେ ନବ ନିରଦ ଦୂର ଆକାଶର, ପ୍ରୀତି ପାଗଳିନି କେତକୀ ମୁଁ ମାତର (୨ଥର)
ତା ପାଇଁ ନାଚୁଚି ନାଚୁ ନିରନ୍ତର, ଥକି ନଯାଉ ଏ ପାଦ ଦୁଇ ମୋର
ଏଡାଇ ସକଳ ବାଧା, ପ୍ରେମ ସୁଧା ନାମ ରାଧା
ଅନାହତ ନାଦେ........ ନାମ ରାଧା

ରାଧା ବିନୁ ଆନ ନାହିଁ ପ୍ରୟୋଜନ, ରାଧା ମୋ ଶରୀର, ରାଧା ମୋ ସ୍ପନ୍ଦନ (୨ଥର)
ଅସିଧାରେ ହସି ପଥ ଅତିକ୍ରମ, ସହି ସୁଖ କ୍ଲେଶ, ମାନ ଅପମାନ
ତନୁମନ ଧନ ଏକ୍ତାର ଜୀବନ, ଶ୍ରୀପାଦେ ହୋଇଛି ଛନ୍ଦା
ପ୍ରେମ ସୁଧା ନାମ ରାଧା (୨ଥର)
ଅନାହତ ନାଦେ ପାଧା ପାସା ନିଧା ପାଧା ମାପା ଗାମା
ରେଗା ଗାରେ ସାରେ ସାନି ସାରେ ଗାମା ପାଧାପା
ଅନାହତ ନାଦେ ପାଧାସାରେ ଗାରେ ସାନି ଧାପା
ପା ପା ପା ପା ପା ପାପା ପାଧା ପାମା ଗାରେ ସାନି ଧାପା
ପାଧାନିସା ରେଗା ରେସା, ସାରେ ଗାମାପାମା ଗାମାପାଧା ନିଧା
ପାଧାନିସା ରେଗା ରେସା, ସାରେ ଗାମାପାମା ଗାମାପାଧା ନିଧା
ପାଧାନିଧାସା, ପାଦାନିଧାସା ପାଧାନିଧାସା
ଅନାହତ ନାଦେ ଘୋଷରେ ମୁରଲୀ, ପ୍ରେମ ସୁଧା ନାମ ରାଧା (୨ଥର)

# ବିଫଳ ଜୀବନ ମନ ହରିନାମ ବିନାରେ

ବିଫଳ ଜୀବନ ମନ ହରିନାମ ବିନାରେ, ହରିନାମ ବିନା
ଜପ ମନ ତ୍ୟାଗି ସବୁ, ତୁଚ୍ଛ କାମନାରେ, ହରିନାମ ବିନାରେ ହରିନାମ ବିନା
ବିଫଳ ଜୀବନ ମନ ହରିନାମ ବିନାରେ, ହରିନାମ ବିନା

ବୃଥା ଚିନ୍ତା ମଗନ ବୃଥାରେ ବଚନ, ବୃଥା କର୍ମେ ବିତିଯାଏ ଦୁର୍ଲଭ ଜୀବନ (୨ଥର)
ବିଭୁ ଶ୍ରୀଚରଣ କର ନିତ୍ୟ ବନ୍ଦନାରେ, ନିତ୍ୟ ବନ୍ଦନା
ବିଫଳ ଜୀବନ ମନ ହରିନାମ ବିନାରେ, ହରିନାମ ବିନା

ଗହନ ମାୟା ବେଶେ ବିଭୋର ସଂସାର,
ସ୍ୱାର୍ଥ ବ୍ୟାଧି କବଳେ ବିଶ୍ୱ ଚରାଚର (୨ଥର)
କରୁଛ ଚପଳ ମନ ନିଜକୁ ଛଳନାରେ, ନିଜକୁ ଛଳନା
ବିଫଳ ଜୀବନ ମନ ହରିନାମ ବିନାରେ, ହରିନାମ ବିନା
(ମୁରଲୀ ମଧୁର ତାନେ ମୁଖରିତ ଗଗନ,
ପବନ ଆଉ ବାଜେ ମଦୀରା ମୃଦଙ୍ଗ) (୨ଥର)

ବାଜୁଛି ମୋହନ ସ୍ୱର ଶୁଣରେ ମାନସ,
ବ୍ୟାକୁଳ ପ୍ରାଣେ ଡାକନ୍ତି ପ୍ରଭୁ ଜଗଦୀଶ (୩ଥର)
ସେ ମଧୁର ଶ୍ୱନ ବାରେ ଶୁଣ ମତିହିନାରେ, ଶୁଣ ମତି ହୀନା

ବିଫଳ ଜୀବନ ମନ ହରିନାମ ବିନାରେ, ହରିନାମ ବିନା
ଜପ ମନ ତ୍ୟାଗି ସବୁ ତୁଚ୍ଛ କାମନାରେ, ହରିନାମ ବିନାରେ ହରିନାମ ବିନା



# ସୁନ୍ଦର ରୂପ ତୁମ, ହୃଦୟେ ଚିତ୍ର ସମ

ସୁନ୍ଦର ରୂପ ତୁମ, ହୃଦୟେ ଚିତ୍ର ସମ
ବିରାଜେ ଅବିରାମ - ୨
ପାରେନା ଦେଖି ଯାହା ମୁଁ ଯେ (୨)
ଅନ୍ଧ ମୁଁ ପ୍ରିୟତମ ପ୍ରିୟତମ.... ପ୍ରିୟତମ.... ପ୍ରିୟତମ
ସୁନ୍ଦର ରୂପ ତୁମ, ହୃଦୟେ ଚିତ୍ର ସମ

ନୟନେ ଘେରି ଯାହା ସବୁତ ତୁମ ଛାୟା
ପ୍ରକଟେ ଚରାଚରେ ବ୍ୟାପିଚି ତୁମ କାୟା..... ୨
(ପାରେନା ବୁଝି ଯାହା ମୁଁ ଯେ) - ୨ ମାୟାରେ ହୋଇ ଭ୍ରମ
ପ୍ରିୟତମ.... ପ୍ରିୟତମ.... ପ୍ରିୟତମ
ସୁନ୍ଦର ରୂପ ତୁମ, ହୃଦୟେ ଚିତ୍ର ସମ

ଆନନ୍ଦ ରସଧାରା ବହଇ ରସାସାରା
ସେ ପ୍ରେମ ପାରାବରେ ଭାସନ୍ତିଗ୍ରହ ତାରା....... ୨
(ବିଷାଦେ ଦିଶାହରା ମୁଁ ଯେ) -୨ ଭୁଲି ତୁମରି ନାମ
ପ୍ରିୟତମ.... ପ୍ରିୟତମ.... ପ୍ରିୟତମ
ସୁନ୍ଦର ରୂପ ତୁମ, ହୃଦୟେ ଚିତ୍ର ସମ

ଆଲୋକେ ଆଲୋକିତ ଏ ମହୀ ପୁଲକିତ
ସବୁଠି ପ୍ରତିପ୍ରାଣେ କରୁଣା ଅବିରତ..... ୨
(ତ୍ରିତାପେ ମରେ ଦହି ମୁଁ ଯେ) -୨ ଅଜ୍ଞାନ ମୂଢ ସମ
ପ୍ରିୟତମ.... ପ୍ରିୟତମ.... ପ୍ରିୟତମ
ସୁନ୍ଦର ରୂପ ତୁମ, ହୃଦୟେ ଚିତ୍ର ସମ

# ପ୍ରଭୁକି ସୁନ୍ଦର ଦିଶ ବସି ଶୁଭ୍ର ଆସନରେ

ପ୍ରଭୁକି ସୁନ୍ଦର ଦିଶ ବସି ଶୁଭ୍ର ଆସନରେ
ନୟନରଞ୍ଜନ ଶୋଭା - ୩ଥର
ନୟନ ରଞ୍ଜନ ଶୋଭା, ମୋହନ ଭଙ୍ଗୀରେ
ପ୍ରଭୁ.......... (୦)

ଢଳ ଢଳ ନୟନ ଦୁଇ, ଦେଖୁଥାଏ ଏ ସାରା ମହୀ
ମନ ମତାଣିଆ ହସ, ହରିନିଏ ସବୁରି କ୍ଲେଶ (୨)
ଅଧରୁ ଝରଇ ସେବା - ୨ଥର
ଅଧରୁ ଛରଇ ସେବା ଅମୀୟ ସୁଧାରେ
ପ୍ରଭୁ............ (୧)

ଯିଏ ଯେଉଁ ଭାବରେ ଆସେ, ଦେଖିନିଏ ସେହି ରୂପେ ସେ
ପ୍ରେମୀ ଦେଖେ ପ୍ରେମମୟ, ମାୟା ଚକ୍ଷୁ ନବୁଝି ପାରେ (୨)
ମନମୋହିନୀ ନନ୍ଦନ ଅପାର ଲୀଳାରେ
ପ୍ରଭୁ................ (୨)

ପ୍ରଭୁ କି ସୁନ୍ଦର ଦିଶ ବସି ଶୁଭ୍ର ଆସନରେ
ନୟନ ରଞ୍ଜନ ଶୋଭା- ୨ଥର
ନୟନ ରଞ୍ଜନ ଶୋଭା, ମୋହନ ଭଙ୍ଗୀରେ
ପ୍ରଭୁ................ (୩)



# ପ୍ରଭୁ ତୁମେ ଅପରୁପ, କେଡ଼େ ସୁନ୍ଦର

ପ୍ରଭୁ ତୁମେ ଅପରୁପ, କେଡ଼େ ସୁନ୍ଦର
ତୁମରି ବନ୍ଦନା ହେଉ ମୋ କଣ୍ଠସ୍ୱର - ୨
ପ୍ରଭୁ ତୁମେ ଅପରୂପ, କେଡ଼େ ସୁନ୍ଦର

(ଯାହାକୁ ଖୋଜୁଛି ଜ୍ଞାନୀ, ବେଦ ବେଦାନ୍ତ ବଖାଣୀ (୨)
ରୂପ ରସ ଗନ୍ଧେ ତୁମ (୨) ସ୍ୱରୁପ ତାର,
ପ୍ରଭୁ ତୁମେ ଅପରୁପ, କେଡ଼େ ସୁନ୍ଦର

ଯାହା ଅଛି ଜଗତରେ ସବୁ ତୁମରି ଭିତରେ (୨)
ତୁମେ ଏକ ସୀମାହୀନ (୨) ରୂପ ତୁମର,
ପ୍ରଭୁ ତୁମେ ଅପରୂପ, କେଡ଼େ ସୁନ୍ଦର

ଅମୃତ ମୋ ଲୋଡାନାହିଁ, ସରଗ ମୁଁ ଚାହେଁ ନାହିଁ )(୨)
ମୋତେ ଭଲ ଲାଗେ ତୁମ - ୨ କଞ୍ଜ ପୟର
ପ୍ରଭୁ ତୁମେ ଅପରୂପ, କେଡ଼େ ସୁନ୍ଦର
ତୁମରି ବନ୍ଦନା ହେଉ ମୋ କଣ୍ଠସ୍ୱର - ୨
ପ୍ରଭୁ ତୁମେ ଅପରୂପ କେଡ଼େ ସୁନ୍ଦର

